# ଶ୍ରୀ ନିମ୍ବାର୍କ


ଲେଖକ

ଶ୍ରୀ ସୂର୍ଯ୍ୟନାରାୟଣ ଦାଶ ଏମ୍. ଏ.



ପ୍ରଥମ ମୁଦ୍ରଣ ୧୯୫୨

ପ୍ରକାଶକ

ପଣ୍ଡିତ ଶ୍ରୀ ସୂର୍ଯ୍ୟନାରାୟଣ ଦାଶ ଏମ୍. ଏ.

ଗ୍ରନ୍ଥାଶ୍ରମ.

ପୁରୀ.

[illegible] ଟଙ୍କା

## ସୂଚୀପତ୍ର

# ନିମ୍ବାର୍କ

## ପ୍ରଥମ ଅଧ୍ୟାୟ

### ନିମାତ୍ ବୈଷ୍ଣବ ସମ୍ପ୍ରଦାୟ

ବୈଷ୍ଣବ ସମ୍ପ୍ରଦାୟ ମଧ୍ୟରେ ଚତୁର୍ଥ ସମ୍ପ୍ରଦାୟ । ଏହାର ଅନ୍ୟ ଏକ ନାମ ସନକାଦ ସମ୍ପ୍ରଦାୟ ।

ରାଧାକୃଷ୍ଣଙ୍କର ଯୁଗଳରୂପ ଏ ସମ୍ପ୍ରଦାୟର ବୈଷ୍ଣବମାନଙ୍କର ଏକମାତ୍ର ଉପାସ୍ୟ । ଏମାନେ ଲଲାଟରେ ଗୋପୀଚନ୍ଦନର ଦୁଇଟି ଊର୍ଦ୍ଧରେଖା କାଟନ୍ତି ଏବଂ ଏହାର ମଧ୍ୟସ୍ଥଳରେ କୃଷ୍ଣବର୍ଣ୍ଣ ବର୍ତ୍ତୁଳାକାର ତିଳକ ଦଅନ୍ତି । ତୁଳସୀକାଠର ମାଳା ବେକରେ ବାନ୍ଧନ୍ତି । ଜପ କରିବା ପାଇଁ ତୁଳସୀମାଳା ବ୍ୟବହାର କରନ୍ତି ।

ଶ୍ରୀମଦ୍ଭାଗବତ ଏ ସମ୍ପ୍ରଦାୟର ପ୍ରଧାନ ଶାସ୍ତ୍ର ଗ୍ରନ୍ଥ । ଶ୍ରୀ ନିମ୍ବାଦିତ୍ୟଙ୍କ ବ୍ରହ୍ମ ସୂତ୍ରର ବେଦାନ୍ତ ପାରିଜାତ ସୌରଭ ଓ ତାଙ୍କ ଶିଷ୍ୟ ଶ୍ରୀନିବାସଙ୍କ ବେଦାନ୍ତ କୌସ୍ତୁଭ ଏମାନଙ୍କର ଦର୍ଶନର ପ୍ରଧାନ ଗ୍ରନ୍ଥ ।

ନିମାତ୍ ସମ୍ପ୍ରଦାୟ ଭିତରେ ଗୃହସ୍ଥ ଓ ବିରକ୍ତ ଉଭୟ ଶ୍ରେଣୀର ବୈଷ୍ଣବ ଅଛନ୍ତି । ହରି ଦାସ ଓ କେଶବ ଭଟ୍ଟ ନିମ୍ବା-ଦିତ୍ୟଙ୍କର ଦୁଇଜଣ ଶିଷ୍ୟ । ହରି ଦାସଙ୍କଠାରୁ ଗୃହସ୍ଥ ସମ୍ପ୍ରଦାୟ ଓ କେଶବ ଭଟ୍ଟଙ୍କଠାରୁ ବିରକ୍ତ ସମ୍ପ୍ରଦାୟର ଉତ୍ପତ୍ତି ହୋଇଛି ।

ଜୟଦେବ ଗୋସ୍ୱାମୀ ନିମାର୍କ ସମ୍ପ୍ରଦାୟର ମତାବଲମ୍ବୀ ଥିଲେ । "ଗୀତ ଗୋବିନ୍ଦ" ଏହାର ପ୍ରକୃଷ୍ଟ ପ୍ରମାଣ । ଏହି ଗ୍ରନ୍ଥରେ ସେ ରାଧାକୃଷ୍ଣଙ୍କର ଯୁଗଳ ମୂର୍ତ୍ତିଙ୍କୁ ଉପାସ୍ୟ ରୂପେ ଗ୍ରହଣ କରିଅଛନ୍ତି ।

ଶ୍ରୀ ଶ୍ରୀ ଭକ୍ତମାଳ ଗ୍ରନ୍ଥରେ ଚାରି ସମ୍ପ୍ରଦାୟ ବିଷୟରେ ଏପରି ଲେଖାଅଛି ।

ପ୍ରଥମାବତାର ଚତୁର୍ବିଂଶତି ମଧ୍ୟରେ
ହରି ଅବେଶେ ରାମାନୁଜ ଅଧ ପଦ୍ମରେ ।
ବିଷ୍ଣୁ ସ୍ୱାମୀ ମଧ୍ୱାଚାର୍ଯ୍ୟ ପୁଣି ନିମ୍ବାଦିତ୍ୟ
ଚାରି ସମ୍ପ୍ରଦାୟ ଚାରି ଆଚାର୍ଯ୍ୟ ବଦତି । X ପୃ ୧୦୨ ।ବା

ଏଉ କେଉଁ ସମ୍ପ୍ରଦାୟର ପ୍ରବର୍ତ୍ତକ ତାହା "ପ୍ରମେୟ-ରତ୍ନାବଳୀ"ରେ ଲେଖା ହୋଇଛି ।

ରାମାନୁଜଂ ଶ୍ରୀଃ ସ୍ୱୀଚକ୍ରେ ମଧ୍ୱାଚାର୍ଯ୍ୟଂ ଚତୁର୍ମୁଖଃ ।
ଶ୍ରୀ ବିଷ୍ଣୁ ସ୍ୱାମିନୋ ରୁଦ୍ରୋ ନିମ୍ବାଦିତ୍ୟଂ ଚତୁଃସନଃ ॥

ରାମାନୁଜଙ୍କୁ ଶ୍ରୀ ମାଧ୍ୱା, ଚାର୍ଯ୍ୟଙ୍କୁ ଚତୁର୍ମୁଖ, ବିଷ୍ଣୁ ସ୍ୱାମୀଙ୍କ ରୁଦ୍ର ଓ ନିମ୍ବାଦିତ୍ୟଙ୍କୁ ଚତୁଃସନ ସମ୍ପ୍ରଦାୟର ପ୍ରବର୍ତ୍ତକ ବୋଲି କୁହାଯାଇଛି ।

ହିନ୍ଦିରେ ଗୋଟିଏ ଦୋହା ଏ ସମ୍ବନ୍ଧରେ ଅଛି ।

ରମାପଦ୍ଧତି ରାମାନୁଜ ବିଷ୍ଣୁ ସ୍ୱାମୀ ତ୍ରିପୁରାରି
ନିମ୍ବାଦିତ୍ୟ ସନକାଦି ମଧୁକର ଗୁରୁ ମୁଖ ଚାରି ।



# ଦ୍ୱିତୀୟ ଅଧ୍ୟାୟ

## ନିମ୍ବାର୍କଙ୍କ ଜୀବନୀ

**ନିମ୍ବାର୍କ ସୁଦର୍ଶନଙ୍କ ଅବତାର**—ଯେତେବେଳେ ସଂସାରର ଲୋକମାନେ ବେଦ ପ୍ରଦର୍ଶିତ ଧର୍ମ ମାର୍ଗକୁ ଭୁଲିଯାଇ ଅଧର୍ମପଥରେ ଚାଲିବାକୁ ଆରମ୍ଭ କଲେ ସେତେବେଳେ ପରମ କାରୁଣିକ ଭଗବାନ ସଂସାର ଜନମାନଙ୍କ ପ୍ରତି କୃପା ପରବଶ ହୋଇ ସୁଦର୍ଶନଙ୍କୁ ଆଜ୍ଞା ଦେଲେ :—

ସୁଦର୍ଶନ ! ହେ ମହାବାହୋ ! କୋଟିସୂର୍ଯ୍ୟସମପ୍ରଭ !
ଅଜ୍ଞାନତମିସ୍ରାନ୍ଧାନାଂ ବର୍ତ୍ମୋମାର୍ଗ ପ୍ରଦର୍ଶୟ ।

"ହେ ସୁଦର୍ଶନ ! ହେ ମହାବାହୋ ! ହେ କୋଟିସୂର୍ଯ୍ୟସମ ! ତେଜସ୍ୱୀନ ସୁଦର୍ଶନ ! ଅଜ୍ଞାନରୂପ ଅନ୍ଧକାର ଦ୍ୱାରା ଅନ୍ଧ ଅର୍ଥାତ୍ ଭଗବତ ତତ୍ତ୍ୱସମ୍ବନ୍ଧରେ ଅଜ୍ଞ ପୁରୁଷମାନଙ୍କୁ ବର୍ତ୍ତ୍ମମାର୍ଗ ପ୍ରଦର୍ଶନ କରାଅ ।"

ସନାତନ ବୈଦିକମାର୍ଗ ଲୋକମାନଙ୍କୁ ଦେଖାଇ ଭଗବାନଙ୍କୁ ପାଇବା ଉପାୟ ବିଧାନ କରିବାକୁ ସ୍ୱୟଂ ଭଗବାନ୍ ସୁଦର୍ଶନଙ୍କୁ ଆଜ୍ଞା ଦେଲେ । ଭଗବାନଙ୍କ ଏହି ଆଜ୍ଞା ପ୍ରମାଣେ ସ୍ୱୟଂ ସୁଦର୍ଶନ ଧରାଧାମରେ ଲୋକମାନଙ୍କୁ ସତ୍‌ମାର୍ଗରେ ଚାଳିତ କରିବା ପାଇଁ ଅବତୀର୍ଣ୍ଣ ହେଲେ । ମହାବାହୁ ସୁଦର୍ଶନ ଏ ପୁଣ୍ୟମୟ ଭାରତଭୂମିରେ ଶ୍ରୀନିମ୍ବାର୍କାଚାର୍ଯ୍ୟ ରୂପରେ ଅବତୀର୍ଣ୍ଣ ହେଲେ ।

**ଜନ୍ମସ୍ଥାନ**—ଶ୍ରୀନିମ୍ବାର୍କ ଆଚାର୍ଯ୍ୟଙ୍କ ଜନ୍ମସ୍ଥାନ ଦାକ୍ଷିଣାତ୍ୟ ଅଞ୍ଚଳ ଅନ୍ତର୍ଗତ ତୈଲଙ୍ଗ ଦେଶରେ । ଯେଉଁ ଗ୍ରାମରେ ସେ

ଜନ୍ମଗ୍ରହଣ କରିଥିଲେ ତାର ନାମ ହେଉଛି ବୈଦୂର୍ଯ୍ୟ ପର୍ବତ । ଶ୍ରୀନିମ୍ବାର୍କଙ୍କ ବାଲ୍ୟାବସ୍ଥାର ନାମ ହେଉଛି ନିୟମାନନ୍ଦ । ନିୟମାନନ୍ଦଙ୍କ ପିତାଙ୍କ ନାମ ଶ୍ରୀ ଅରୁଣ ମୁନି ଓ ମାତାଙ୍କ ନାମ ଶ୍ରୀମତୀ ଜୟନ୍ତୀ ଦେବୀ । ଅରୁଣ ମୁନିଙ୍କ ଆଶ୍ରମର ନାମ ଅରୁଣ ଆଶ୍ରମ ।

## ବାଲ୍ୟଜୀବନ

ନିମ୍ବାର୍କ ନାମଧାରଣ—ନିୟମାନନ୍ଦଙ୍କ ବାଲ୍ୟାବସ୍ଥା ବେଳେ ଥରେ ସନ୍ଧ୍ୟା ସମୟରେ ସ୍ୱୟଂ ଚତୁର୍ମୁଖ ବ୍ରହ୍ମା (କାହାର କାହାର ମତରେ ଦେବର୍ଷି ନାରଦ) ସନ୍ନ୍ୟାସୀ ବେଶଧାରଣ କରି ଅରୁଣ ଆଶ୍ରମରେ ଉପସ୍ଥିତ ହେଲେ । ସେତେବେଳେ ଅରୁଣ ଆଶ୍ରମରେ ଭୋଜ୍ୟ ସାମଗ୍ରୀ କିଛି ନଥିଲା, ଅରୁଣ ମୁନି ମଧ୍ୟ ଆଶ୍ରମରେ ନ ଥିଲେ । ସନ୍ନ୍ୟାସୀ କିଛି ଖାଇବାକୁ ମାଗିବାରୁ ଜୟନ୍ତୀ ଦେବୀ ଚିନ୍ତିତ ହୋଇ ପଡ଼ିଲେ । ଘରେ କିଛି ନଥିବାରୁ କିଛି ଭୋଜନ ସାମଗ୍ରୀ ଦେଇ ନ ପାରି ସେ ଅତ୍ୟନ୍ତ ମନକଷ୍ଟ ଭୋଗ କଲେ । ନିୟମାନନ୍ଦ ମାତାଙ୍କର ଏ ଅବସ୍ଥା ଦେଖି ସନ୍ନ୍ୟାସୀଙ୍କୁ ସମ୍ବୋଧନ କରି କହିଲେ, "ହେ ସନ୍ନ୍ୟାସୀ, ଆପଣ କିଛି ସମୟ ଅପେକ୍ଷା କରନ୍ତୁ । ମୁଁ ନିକଟସ୍ଥ ବନକୁ ଯାଇ କିଛି ଫଳମୂଳ ଆଣି ଆପଣଙ୍କର ଭୋଜନର ଆୟୋଜନ କରିବି ।" ସେତେବେଳକୁ ସୂର୍ଯ୍ୟଦେବ ଅସ୍ତାଚଳ ନିକଟରେ ପହଞ୍ଚି ସାରିଲେଣି । ଅସ୍ତଯିବାକୁ ଅତି ଅଳ୍ପ ସମୟ ବାକି ଅଛି । ସନ୍ନ୍ୟାସୀ କହିଲେ, "ବତ୍ସ, କିଛି ସମୟ ଅପେକ୍ଷା କରିବାକୁ ମୋର ଆପତ୍ତି ନଥିଲା । କିନ୍ତୁ କଣ କରିବି ? ସୂର୍ଯ୍ୟଦେବ ଅସ୍ତ ହେବାକୁ ବସିଲେଣି । ସନ୍ଧ୍ୟାପୂର୍ବରୁ ସନ୍ନ୍ୟାସୀମାନଙ୍କୁ ଭୋଜନ ଶେଷ କରିବାକୁ ହେବ । ତୁମେ ବଣକୁ ଯାଇ ଫଳମୂଳ ଆଣି ମୋର ଭୋଜନର ଆୟୋଜନ କଲାବେଳକୁ ସନ୍ଧ୍ୟା ହୋଇ ସାରିଥିବ । ଅତଏବ ମୋର ଭୋଜନ ହୋଇ ପାରିବ ନାହିଁ । ଅପେକ୍ଷା କରି କିଛି ଲାଭ

ନାହିଁ । ମୁଁ ଯାଉଛି ।" ଭୋଜନ ନ କରି ସନ୍ୟାସୀ ଘରୁ ଫେରିଯିବେ, ଏକଥା ନିୟମାନନ୍ଦଙ୍କ ପ୍ରାଣରେ ବଡ଼ ବ୍ୟଥା ଦେଲା । ସେ ସନ୍ୟାସୀଙ୍କି କହିଲେ, "ଆପଣଙ୍କୁ ଭୋଜନ ନ ଦେଇ ମୁଁ କେବେ ଆପଣଙ୍କୁ ଛାଡ଼ ଦେବି ନାହିଁ । ଆପଣ ଭୋଜନ ଶେଷ ନ କରିବା ପର୍ଯ୍ୟନ୍ତ ସୂର୍ଯ୍ୟଦେବ କେବେ ଅସ୍ତ ହୋଇ ପାରିବେ ନାହିଁ ।" ବାଳକର ଏକଥାରେ ସନ୍ୟାସୀ ଟିକିଏ ଆଶ୍ଚର୍ଯ୍ୟ ହୋଇଗଲେ । ନିୟମାନନ୍ଦଙ୍କ ମିନତିକୁ ଏଡ଼ି ନପାରି ଆଶ୍ରମରେ ରହିଲେ ।

ଆଶ୍ରମ ନିକଟରେ ଗୋଟିଏ ନିମ୍ବବୃକ୍ଷ ଥିଲା । ନିୟମାନନ୍ଦ ସ୍ୱୟଂ ସୁଦର୍ଶନ ତେଜକୁ ସେ ବୃକ୍ଷରେ ସ୍ଥାପନ କଲେ । ତାପରେ ବଣକୁ ଯାଇ ଫଳମୂଳ ଆଣି ମାତାଙ୍କୁ ଦେଲେ । ଜୟନ୍ତୀ ଦେବୀ ଭୋଜନ ପ୍ରସ୍ତୁତ କରି ସନ୍ୟାସୀଙ୍କୁ ଦେଲେ । ସୂର୍ଯ୍ୟଦେବ ଅସ୍ତ ହୋଇ ନଥିବାର ଦେଖି ସନ୍ୟାସୀ ଭୋଜନରେ ବସିଲେ । ଭୋଜନ ଶେଷ ହେବା ପରେ ସନ୍ୟାସୀ ଆଶ୍ରମର ବାହାରକୁ ଆସି ଦେଖନ୍ତି ଯେ ରାତ୍ର ପ୍ରାୟ ଏକ ପ୍ରହର ଅତୀତ ହୋଇ ଗଲଣି । ସେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ବୋଧ କଲେ । ଏ ରହସ୍ୟର ଭେଦ ପ୍ରଶ୍ନ କରିବାରୁ ନିୟମାନନ୍ଦ ନିମ୍ବବୃକ୍ଷ ଉପରେ ସ୍ୱୀୟ ସୁଦର୍ଶନ ତେଜ ରଖିବା କଥା କହିଲେ । ବାଳକର ଏ ଅଦ୍ଭୁତ କାର୍ଯ୍ୟର ବିବରଣ ଶୁଣି ସନ୍ୟାସୀ ପରମ ଆନନ୍ଦ ଲାଭ କଲେ ଏବଂ ତାଙ୍କର ନାମ କର୍ମାନୁରୂପ "ନିମ୍ବାର୍କ" ଅର୍ଥାତ୍ ନିମ୍ବ ବୃକ୍ଷର ଅର୍କ ବୋଲି ରଖିଲେ । ସେହିଦିନଠାରୁ ନିୟମାନନ୍ଦଙ୍କୁ ନିମ୍ବାର୍କ ବୋଲି ଡାକିଲେ । ନିମ୍ବାର୍କଙ୍କୁ ନିମ୍ବାଦିତ୍ୟ ବୋଲି ମଧ୍ୟ ଲୋକେ କହନ୍ତି ।

ଅରୁଣ ମୁନିଙ୍କର ପୁତ୍ର ହେତୁ ତାଙ୍କର ଅନ୍ୟନାମ ଆରୁଣୀ ମଧ୍ୟ ।

ଶ୍ରୀ ନିମ୍ବାର୍କଙ୍କ ଜୀବନୀ ସମ୍ବନ୍ଧରେ ବିଶେଷ ବିବରଣ ଏ ଯାବତ୍ କୌଣସିଠାରେ ମିଳି ନାହିଁ । ତାଙ୍କର ବାଲ୍ୟାବସ୍ଥା ସମ୍ପର୍କରେ ଉପରୋକ୍ତ ଘଟଣାଟି କେବଳ ଶୁଣାଯାଏ । ଏ ଘଟଣାକୁ ବିଭିନ୍ନ ପ୍ରକାର ଲେଖକ ବିଭିନ୍ନ ପ୍ରକାରରେ ଲେଖିଥିଲେ ମଧ୍ୟ ମୂଳ ଘଟଣା ସମାନ ।

ତାହା ତାହା ମତରେ ଏ ସନ୍ୟାସୀ ଜଣେ ଦଣ୍ଡୀ; ଯୁକ୍ତି ତର୍କ କରିବା ପାଇଁ ନିମ୍ବାର୍କଙ୍କ ନିକଟକୁ ଅସିଥିଲେ । ସେ ସନ୍ୟାସୀ ଜଣେ ଜୈନ ଓ ନିମ୍ବାର୍କଙ୍କ ସହିତ ଶାସ୍ତ୍ରାଲୋଚନା କରୁ କରୁ ସନ୍ଧ୍ୟା ପ୍ରାୟ ଉପଗତ ହୋଇ ଯାଇଥିଲା ବୋଲି ମଧ୍ୟ କେହି କେହି କହନ୍ତି ।

ନିୟମାନନ୍ଦ ସୂର୍ଯ୍ୟଦେବଙ୍କୁ ପ୍ରାର୍ଥନା କରିବାରୁ ସୂର୍ଯ୍ୟଦେବ ଭକ୍ତ ମନବାଞ୍ଛା ପୂର୍ଣ୍ଣ କରିବା ପାଇଁ ନିମ୍ବବୃକ୍ଷ ଉପରେ ରହିଲେ । ବିଭିନ୍ନ ଲେଖାମାନଙ୍କରୁ ଦୁଇଟି ବିବରଣୀ ନିମ୍ନରେ ଦିଆଗଲା ।

(୧) ଅଚାର୍ଯ୍ୟ ନିମ୍ବାର୍କଙ୍କ ଅପର ନାମ ନିୟମାନନ୍ଦ । ଦେବାଚାର୍ଯ୍ୟ ତାଙ୍କ ବୃତ୍ତିରେ ନିମ୍ବାର୍କଙ୍କୁ ନିୟମାନନ୍ଦ ବୋଲି ଅଭିହିତ କରି ଅଛନ୍ତି ।

ସେ ନିଜ ଗ୍ରନ୍ଥର ପ୍ରାରମ୍ଭ ଶ୍ଳୋକରେ ଲେଖିଛନ୍ତି :—

ନିୟମେନ ସଦାନନ୍ଦୋ ଜଗଦ୍‌ଭାସୟତୋଽଖିଳମ୍
ତମହଂ ନିୟମାନନ୍ଦଂ ବନ୍ଦେ କୃଷ୍ଣଂ ଜଗଦ୍‌ଗୁରୁମ୍ ।

ଗ୍ରନ୍ଥ ସମାପ୍ତିରେ ମଧ୍ୟ ସେ ଏପରି ଲେଖିଛନ୍ତି :—

"ଶ୍ରୀମତ୍ ସନତ୍ କୁମାର ସନ୍ତତିପଦାଶ୍ରିତ
ଶ୍ରୀ ଭଗବନ୍ନିୟମାନନ୍ଦାଚାର୍ଯ୍ୟ ପଦପଙ୍କଜ ମକରନ୍ଦ ଭୃଙ୍ଗ
ଶ୍ରୀ ଦେବାଚାର୍ଯ୍ୟ ବିରଚିତାୟାଂ " ଇତ୍ୟାଦି ।

ନିମ୍ବାର୍କ ବା ନିମ୍ବାଦିତ୍ୟଙ୍କ ପ୍ରଥମ ନାମ ଭାସ୍କରାଚାର୍ଯ୍ୟ ଥିଲା । ନିମ୍ବାର୍କ ପାଷଣ୍ଡଦଳନ ନିମିତ୍ତ ସୂର୍ଯ୍ୟ ଅବତାର ରୂପରେ ସଂସାରରେ ଅବତୀର୍ଣ୍ଣ ହୋଇଥିଲେ ବୋଲି ତାଙ୍କ ସମ୍ପ୍ରଦାୟର ମତ । ସ୍ୱାମୀ ପ୍ରଜ୍ଞାନାନନ୍ଦ ତାଙ୍କ ସମ୍ବନ୍ଧରେ ଲେଖିଛନ୍ତି:—"ବୃନ୍ଦାବନ ନିକଟରେ ତାଙ୍କର ବାସ ଥିଲା । ଏକଦା ଜଣେ ଦଣ୍ଡୀ—କାହାର କାହାର ମତରେ ଜଣେ ଜୈନ ଉଦାସୀନ, ତାଙ୍କର ଆଶ୍ରମରେ ଉପସ୍ଥିତ ହେଲେ । ଉଭୟଙ୍କ ଭିତରେ ବିଚାର ଆରମ୍ଭ ହେଲା । ବିଚାର କରୁ କରୁ ସୂର୍ଯ୍ୟାସ୍ତ ହେଲା । ଭାସ୍କରାଚାର୍ଯ୍ୟ ଅତିଥିଙ୍କ ପାଇଁ କିଛି ଖାଦ୍ୟ ଉପସ୍ଥିତ କଲେ । କିନ୍ତୁ ଦଣ୍ଡୀ ଓ ଜୈନମାନଙ୍କର ସାୟଂ ଓ ସନ୍ଧି କାଳରେ ଭୋଜନ ନିଷିଦ୍ଧ । ଅତିଥି ଅସ୍ୱୀକାର କଲେ । ପ୍ରତିକାରାର୍ଥେ ଭାସ୍କର ସୂର୍ଯ୍ୟଙ୍କର ଗତିରୋଧ କଲେ । ସୂର୍ଯ୍ୟ ତାଙ୍କ ଆଦେଶରେ ନିକଟସ୍ଥ ନିମ୍ବବୃକ୍ଷରେ ଅବସ୍ଥିତ କଲେ । ତଦବଧି ଭାସ୍କରାଚାର୍ଯ୍ୟ ନିମ୍ବାର୍କ ବା ନିମ୍ବାଦିତ୍ୟ ବୋଲି ବିଖ୍ୟାତ ହେଲେ । ବେଦାନ୍ତ ଦର୍ଶନର ଇତିହାସ । ୧ମ ଭା. ପୃ. ୩୭ ।

ନିମ୍ବାଦିତ୍ୟଙ୍କ ପ୍ରସଙ୍ଗ ଶ୍ରୀ ଶ୍ରୀ ଭକ୍ତମାଳ ଗ୍ରନ୍ଥରେ ମଧ୍ୟ ଲେଖାଅଛି । ତାହା ଏଠାରେ ଉଦ୍ଧାର କରାଗଲା ।

ନିମ୍ବାଦିତ୍ୟ ଏକଦଣ୍ଡୀ ଗୃହସ୍ଥ ନିମନ୍ତ୍ରିଲ
ଦ୍ରବ୍ୟ ଆୟୋଜନ ପାକେ ସନ୍ଧ୍ୟା ଆସି ହୋଇଲ ।
ଯତି ଶାସ୍ତ୍ର ବଚନ ପଢ଼ସ୍ତା କହେ ତବେ
ସବେ ଭିକ୍ଷା ଦଣ୍ଡୀର ନିଷେଧ ବିଧି ରବେ ।
ଏହା ଶୁଣି ଚିନ୍ତି ନିମ୍ବାଦିତ୍ୟ ମହାଶୟ
ନିଜ ଭକ୍ତି ବଳେ ସାଧୁ ସୃଜିଲ ଉପାୟ ।
ଅଙ୍ଗିନାୟ ଅଛୁୟେ ବୃହତ ନିମ୍ବ ବୃକ୍ଷ
ଉଦୟ କରାଇ ଆସି ବୃକ୍ଷୋପର ଅର୍କ ।

କୃଷ୍ଣ ଭକ୍ତ ଅନୁରୋଧେ ସୂର୍ଯ୍ୟ ଦେବ ଆସି
ପ୍ରହରେକ ଦିବା ଅଛେ ଏ ମତ ପ୍ରକାଶି ।
ଭୋଜନ କରିଯା ତଥା ବୈଷେ ଯବେ ଯତି
ସୂର୍ଯ୍ୟ ନିଜ ସ୍ଥାନେ ଗେଲ ଲଭିଣ୍ଠା ସମ୍ମତି ।
ତଖନ ପ୍ରହର ନିଶୀ ପ୍ରତୀତ ହଇଲ
ଯତିର ଆଶ୍ଚର୍ଯ୍ୟ ବୋଧ ତଖନ୍ ଜନ୍ମିଲ ।
କୃଷ୍ଣ ଭକ୍ତ ନିମ୍ବାଦିତ୍ୟ ପ୍ରଭାବ ଦେଖିଯା
ଚରଣେ ପଡ଼ିଲ ଯତି ଶରଣ ଲଇୟା ।
ସାଧୁସଙ୍ଗ ମହିମା ଦେଖ ସ୍ୱେ ଅଦଭୁତ
କୃଷ୍ଣ ଭକ୍ତ ହୈଲ ଯତି ଛାଡ଼ି ଜ୍ଞାନ ମତ ।

ଏହାର ମର୍ମ—ଦିନେ ନିମ୍ବାଦିତ୍ୟ ଜଣେ ଯତି (ବା ଦଣ୍ଡୀ)ଙ୍କୁ ନିମନ୍ତ୍ରଣ କରିଥିଲେ । ପାକଦ୍ରବ୍ୟର ଆୟୋଜନ କରୁ କରୁ ସନ୍ଧ୍ୟା ଆସି ଉପସ୍ଥିତ ହେଲା । ରାତିରେ ଦଣ୍ଡୀମାନଙ୍କର ଭୋଜନ ନିଷେଧ—ଏ ରୀତି ଥିବାର ନିମ୍ବାଦିତ୍ୟ ଜାଣିଥିଲେ । ଅତିଥିଙ୍କୁ ଭୋଜନ କରାଇବା ପାଇଁ ସେ ଏକ ଉପାୟ କଲେ । ତାଙ୍କ ଅଗଣାରେ ଏକ ନିମ୍ବଗଛ ଥିଲା । ସେ ସୂର୍ଯ୍ୟଦେବଙ୍କୁ ପ୍ରାର୍ଥନା କଲେ ଯେ ସେ ଆସି ନିମ୍ବ ଗଛ ଉପରେ ଉଦୟ ହୁଅନ୍ତୁ । କୃଷ୍ଣ ଭକ୍ତ ନିମ୍ବାଦିତ୍ୟଙ୍କ ପ୍ରାର୍ଥନା ସୂର୍ଯ୍ୟଦେବ ଶୁଣିଲେ । ସେ ସନ୍ତୁଷ୍ଟ ହୋଇ ନିମ୍ବଗଛ ଉପରେ ଉଦୟ ହେବାରୁ ପ୍ରହରେ ଦିନ ଥିବା ପରି ଜଣା-ଗଲା । ଯତି ଭୋଜନ କଲେ । ତାର ଭୋଜନ ଶେଷ ହେବା ସଙ୍ଗେ ସଙ୍ଗେ ସୂର୍ଯ୍ୟଦେବ ସ୍ୱସ୍ଥାନକୁ ଗମନ କଲେ । ସେତେ-ବେଳକୁ ପ୍ରହରେ ରାତି ହୋଇଯାଇଥିଲା । ଯତି ଏହା ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲେ । କୃଷ୍ଣଭକ୍ତ ନିମ୍ବାଦିତ୍ୟଙ୍କ ପ୍ରଭାବ ଦେଖି ସେ ଜ୍ଞାନମାର୍ଗ ପରିତ୍ୟାଗ କରି ତାଙ୍କ ଚରଣରେ ଶରଣ ପଶିଲେ ।

(୨) ମହନ୍ତ ଶ୍ରୀ ସନ୍ତଦାସ ବ୍ରଜବିଦେହୀ ଶ୍ରୀ ନିମ୍ବାର୍କଙ୍କ ଜୀବନୀ ବିଷୟରେ "ବେଦାନ୍ତ ଦର୍ଶନ"ରେ ଏପରି ଲେଖିଛନ୍ତି—

"କଥିତ ଅଛି ଯେ, ଏକଦା ବହୁସଂଖ୍ୟକ ଯତି ଅତିଥିରୂପେ ଦିବସାନେ ଆଚାର୍ଯ୍ୟଙ୍କ ଗୋବର୍ଦ୍ଧନ ଗିରି ସମୀପବର୍ତ୍ତୀ ଆଶ୍ରମରେ ଉପସ୍ଥିତ ହେଲେ। ସେ ଯୋଗବଳରେ ସେମାନଙ୍କୁ ଆହାର୍ଯ୍ୟ ବସ୍ତୁ ସମୁଦାୟ ଉପସ୍ଥିତ କଲେ। ସେମାନେ ସୂର୍ଯ୍ୟାସ୍ତ ପରେ ଭୋଜନ କରନ୍ତି ନାହିଁ ବୋଲି ଜ୍ଞାପନ କରିବାରୁ ସେମାନେ ଅଭୁକ୍ତ ରହିବେ ଦେଖି ଆଚାର୍ଯ୍ୟ ନିଜେ ତାଙ୍କର ଆଶ୍ରମସ୍ଥ ବୃହତ୍ ନିମ୍ବବୃକ୍ଷ ଉପରେ ଆରୋହଣ କରି ତଦୁପରି ଆକାଶରେ ଶ୍ରୀଭଗବାନଙ୍କର ସୁଦର୍ଶନ ଚକ୍ର ଆହ୍ୱାନ କରି ସ୍ଥାପିତ କଲେ। ସେହି ଚକ୍ର ସୂର୍ଯ୍ୟଙ୍କ ପରି ପ୍ରଭାଯୁକ୍ତ ହୋଇ ଅତିଥି ଯତି-ମାନଙ୍କଠାରେ ସୂର୍ଯ୍ୟ ବୋଲି ପ୍ରତିଭାତ ହେଲା। ତଦ୍ଦର୍ଶନରେ ସେମାନେ ଭୋଜନ ସାମଗ୍ରୀ ଗ୍ରହଣ କରିବାକୁ ସମ୍ମତ ହେଲେ। ପରନ୍ତୁ ସେମାନଙ୍କ ଭୋଜନ ସମାପନ ହେବାରୁ ଆଚାର୍ଯ୍ୟ ସେହି ସୁଦର୍ଶନଚକ୍ରଙ୍କୁ ପ୍ରତ୍ୟାହାର କଲେ। ସେତେବେଳେ ଅତିଥି ଯତିମାନେ ଦେଖିଲେ ଯେ ସେତେବେଳକୁ ରାତ୍ରିର ଚତୁର୍ଥାଂଶ ଅତୀତ ହୋଇଯାଇଛି। ଏହି ଅଦ୍ଭୁତ ଘଟଣାରୁ ଆଚାର୍ଯ୍ୟଙ୍କ ନାମ ନିମ୍ବାଦିତ୍ୟ ହେଲା। ନିମ୍ବବୃକ୍ଷ ଉପରେ ଆସୀନ ହୋଇ ଆଦିତ୍ୟଙ୍କୁ ଧାରଣ କରିଥିଲେ, ଏହି ଅର୍ଥରେ ସେ ନିମ୍ବାଦିତ୍ୟ ବା ନିମ୍ବାର୍କ ନାମରେ ଅଭିହିତ ହେଲେ।

ନିମ୍ବାର୍କଙ୍କ ସମୟ—ଶ୍ରୀନିମ୍ବାଦିତ୍ୟ ଆଚାର୍ଯ୍ୟ କେବେ ଏହି ଧରାଧାମରେ ଅବତୀର୍ଣ୍ଣ ହୋଇଥିଲେ ତାହା ସଠିକ ନିରୂପଣ କରିବା ସହଜ ସାଧ୍ୟ ନୁହେଁ। କେତେକଙ୍କ ମତରେ ତାଙ୍କ ଜନ୍ମ

ଖ୍ରୀଷ୍ଟପର ଏକାଦଶ ଶତାବ୍ଦୀରେ । କିନ୍ତୁ ନିମ୍ବାର୍କ ସମ୍ପ୍ରଦାୟର ବୈଷ୍ଣବ ପଣ୍ଡିତମାନଙ୍କ ମତରେ ସେ ବହୁ ପ୍ରାଚୀନ ।

ପଣ୍ଡିତ ଶ୍ରୀ କିଶୋରୀ ଦାସଙ୍କ ମତରେ ଶ୍ରୀ ନିମ୍ବାର୍କ ଆଚାର୍ଯ୍ୟ ମହାଭାରତ ଯୁଗର ଭଗବାନ୍ ଶ୍ରୀକୃଷ୍ଣଙ୍କ ସମସାମୟିକ । ନାରଦଙ୍କ ଭକ୍ତିସୂତ୍ରରେ ଯେଉଁ ଅରୁଣିଙ୍କ ନାମ ଉଲ୍ଲେଖ ହୋଇଛି ତାହା ଉପରେ ନିର୍ଭର କରି ସେ ଏହି ସିଦ୍ଧାନ୍ତରେ ଉପନୀତ ହୋଇ-ଅଛନ୍ତି । ଅରୁଣ ମୁନିଙ୍କ ପୁତ୍ର ଥିବାରୁ ନିମ୍ବାର୍କାଚାର୍ଯ୍ୟଙ୍କ ଅପର ନାମ ଅରୁଣ ମୁନି । ନାରଦୀୟ ଭକ୍ତି ସୂତ୍ରରେ ଲେଖାଅଛି—"ଇତ୍ୟେବ ବଦନ୍ତି ଜନ ଜଳ୍ପନିର୍ଭୟା ଏକମତାଃ କୁମାରବ୍ୟାସ ଶୁକଶାଣ୍ଡିଲ୍ୟ ଗର୍ଗବିଷ୍ଣୁ କୌଣ୍ଡିନ୍ୟଶେଷୋଦ୍ଧବାରୁଣି ବଲିହନୁମଦ୍‌ବିଭୀଷଣା-ଦୟୋ ଭକ୍ତ୍ୟାଚାର୍ଯ୍ୟାଃ ।" ୮୩ ସୂତ୍ର । ପ୍ରଧାନ ଭକ୍ତି ଆଚାର୍ଯ୍ୟମାନଙ୍କ ମଧ୍ୟରେ ଆରୁଣିଙ୍କ ନାମ ଲିଖିତ ଅଛି । ଏହି ଆରୁଣି ଯେ ଶ୍ରୀ ନିମ୍ବାର୍କସ୍ୱାମୀ ଏଥିରେ କିଛି ସନ୍ଦେହ ନାହିଁ ବୋଲି କିଶୋରୀ ଦାସଙ୍କ ମତ । ବଲ୍ଲଭ ସମ୍ପ୍ରଦାୟାନୁଗାମୀ ବୈଷ୍ଣବ ଶ୍ରୀ ହରିଶ୍ଚନ୍ଦ୍ର ଏହି ସୂତ୍ରର ଅର୍ଥ ଲେଖିଲବେଳେ "ଆରୁଣି" ଶବ୍ଦରୁ ଅରୁଣ ମୁନିଙ୍କ ପୁତ୍ର ଅରୁଣ ବା ନିମ୍ବାର୍କ ବୋଲି କହିଅଛନ୍ତି । ଭାରତେନ୍ଦୁ ହରିଶ୍ଚନ୍ଦ୍ର ମଧ୍ୟ ନିମ୍ବାର୍କ ଆଚାର୍ଯ୍ୟଙ୍କୁ ଗୋପୀହିତ, ଉଦ୍ଧବ ପ୍ରଭୃତି ଭକ୍ତାଗ୍ରଣୀମାନଙ୍କର ସମକାଳୀନ ବୋଲି "ବୈଷ୍ଣବତା ଔର ଭାରତବର୍ଷ" ନାମକ ପ୍ରବନ୍ଧରେ ଲେଖିଥିବାର କିଶୋରୀ ଦାସ କହନ୍ତି । ଶ୍ରୀ ଭଗବାନ୍ ବେଦବ୍ୟାସ ଭବିଷ୍ୟ ପୁରାଣରେ ନିମ୍ବାର୍କଙ୍କ ନାମ ଉଲ୍ଲେଖ କରି ଅଛନ୍ତି । ଯଥା—

ନିମ୍ବାର୍କୋ ଭଗବାନ୍ ଯେଷାଂ ବାଞ୍ଛିତାର୍ଥ ପ୍ରଦାୟକଃ
ଉଦୟବ୍ୟାପିନୀ ଗ୍ରାହ୍ୟା କୁଲେ ତିଥିରୁପୋଷଣେ ।

ଏକାଦଶୀ ବ୍ରତ ବିଷୟର ସମ୍ପର୍କରେ ଶ୍ରୀ ନିମ୍ବାର୍କଙ୍କ ନାମ ଉଲ୍ଲେଖ କରଯାଇଛି । ଏହାର ଅର୍ଥ ହେଉଛି—ଯେଉଁ କୁଳ ( ପରଂପର )ରେ ଶ୍ରୀ ନିମ୍ବାର୍କ ଭଗବାନ ବାର୍ତ୍ତି ତ୍ରାର୍ଥ ଦଅନ୍ତି, ସେମାନଙ୍କର ବ୍ରତାଦକରେ ଉଦୟ ବ୍ୟାପିନୀ ତିଥିକୁ ଗ୍ରହଣ କରିବା ଉଚିତ । ଏହି ଶ୍ଲୋକଟି ପ୍ରକ୍ଷିପ୍ତ ବୋଲି କେହି କେହି ମତବ୍ୟକ୍ତ କରନ୍ତି । କିନ୍ତୁ ଏହାସତ୍ୟ ନୁହେଁ ବୋଲି ପଣ୍ଡିତ ଶ୍ରୀ କିଶୋର ଦାସଙ୍କ ମତ । ସୁପ୍ରସିଦ୍ଧ ସ୍ମୃତିଶ୍ରେଷ୍ଠ ଶ୍ରୀ କମଲାକର ଭଟ୍ଟ "ନିର୍ଣ୍ଣୟସିନ୍ଧୁ" ନାମକ ଗ୍ରନ୍ଥରେ ଏହି ଶ୍ଲୋକଟି ଉଦ୍ଧାର କରିଅଛନ୍ତି । ନିମ୍ବାର୍କ ସମ୍ପ୍ରଦାୟ ପ୍ରତି ତାଙ୍କର ପକ୍ଷପାତିତ୍ୱ ଥିବାର କିଛି କାରଣ ନାହିଁ । ତା ଛଡ଼ା ଭବିଷ୍ୟ ପୁରାଣର ବିବିଧ ସଂସ୍କରଣରେ ମଧ୍ୟ ଏ ଶ୍ଲୋକଟିଥିବାର ଦେଖାଯାଏ । ସେହିହେତୁ ଏହାକୁ ପ୍ରକ୍ଷିପ୍ତ ବୋଲି କହିବାର କୌଣସି କାରଣ ନାହିଁ । ଭବିଷ୍ୟପୁରାଣରେ ଏ ଶ୍ଲୋକ ଥିବାରୁ ସ୍ପଷ୍ଟରୂପେ ପ୍ରମାଣିତ ହେଉଛି ଯେ, ଶ୍ରୀ ନିମ୍ବାର୍କ ଆଚାର୍ଯ୍ୟ ବହୁ ପ୍ରାଚୀନ କାଳରେ ଅବତୀର୍ଣ୍ଣ ହୋଇଥିଲେ । ପଣ୍ଡିତ କିଶୋର ଦାସ ଏହାର ଆଲୋଚନା କରି କହନ୍ତି ଯେ "ଏଥିରୁ ମଧ୍ୟ ଶ୍ରୀନିମ୍ବାର୍କାଚାର୍ଯ୍ୟ ଶ୍ରୀ ବେଦବ୍ୟାସଙ୍କ ସମୟରେ ବର୍ତ୍ତମାନ ଥିବାର ସିଦ୍ଧ ହେଉଛି । (ଶ୍ରୀ ନିମ୍ବାର୍କ ମହାମୁନୀନ୍ଦ୍ର । ପୃ: ୪)

ପୁରାଣମାନଙ୍କରେ ଶ୍ରୀ ନିମ୍ବାର୍କସ୍ୱାମୀଙ୍କର ଅନ୍ୟାନ୍ୟ ନାମ ଥିବାର ଦେଖାଯାଏ । ବ୍ରହ୍ମ ବୈବର୍ତ୍ତ ପୁରାଣରେ ଏହାଙ୍କୁ ଶ୍ରୀ ହରିପ୍ରିୟାଚାର୍ଯ୍ୟ ବୋଲି ଲେଖିଥିବା ଜଣାଯାଏ । ଏକାଦଶୀ ବିଷୟ ବର୍ଣ୍ଣନ କରିବା ବେଳେ ଶ୍ରୀ ଶୌନକ କହିଛନ୍ତି—"କପାଲବେଧ ମିତ୍ୟାହୁ-ରାଚାର୍ଯ୍ୟେ ହରିପ୍ରିୟଃ ।" ଏହିବାକ୍ୟକୁ ଆଧାର କରି ଶ୍ରୀ କେଶବାଚାର୍ଯ୍ୟ ତାଙ୍କର ଭଗବତ୍ ଗୀତାର ବ୍ୟାଖ୍ୟାରେ ( ଶେଷ ମଙ୍ଗଳାଚରଣ ) କହିଛନ୍ତି—

"ବ୍ୟାଖ୍ୟାତମାଦୌ ତଦଦାଭ୍ରବୋଧାଦା ବାସୁବର୍ଯେଣ
ହରିପ୍ରିୟେଣ ନିମ୍ବାର୍କନାମ୍ନାଂଞ ଗମ୍ଭୀର ବୋଧନ୍"

ଅର୍ଥାତ୍ କେଶବାଗ୍ରଜୀଙ୍କ ତାତ୍ପର୍ଯ୍ୟ ଏହି ଯେ, ଏହି ଗୀତ ର ପ୍ରଥମ ବ୍ୟାଖ୍ୟାନ ହରିପ୍ରିୟ ନାମକ ଶ୍ରୀ ନିମ୍ବାର୍କ ଭଗବାନ କରିଥିଲେ, ମୁଁ ସେହି ବ୍ୟାଖ୍ୟାନର ତାତ୍ପର୍ଯ୍ୟ ମନ୍ଦ ବୁଦ୍ଧିମାନଙ୍କର ଉପକାରାର୍ଥ ବର୍ଣ୍ଣନା କରୁଅଛି ।

ଏହି ବିଷୟକୁ ଆଲୋଚନା କରି କିଶୋର ଦାସ ଲେଖିଛନ୍ତି— "ଅନ୍ୟାନ୍ୟ ଗ୍ରନ୍ଥରେ ମଧ୍ୟ ଏହିପରି କୁହାଯାଇଛି ଯେ ଶ୍ରୀ ନିମ୍ବାର୍କ ଭଗବାନଙ୍କ ରୂଢ଼ ନାମ "ଶ୍ରୀ ହରିପ୍ରିୟ ଆଗ୍ରର୍ଯ୍ୟ" ଏବଂ ଏହି ସମ୍ପ୍ରଦାୟ ଅନୁଗାମୀ ବୈଷ୍ଣବମାନେ ଅଦ୍ୟାବଧି "କପାଳ ବେଧ" ଅନୁସାରେ କେବଳ ବ୍ରତାଦି କରନ୍ତି । ଶ୍ରୀ ଶୌନକଙ୍କ ଏହି କଥାରୁ ଏହା ସ୍ପଷ୍ଟ ରୂପରେ ସିଦ୍ଧ ହେଉଛି ଯେ, ଶ୍ରୀ ନିମ୍ବାର୍କ ଭଗବାନ ଶୌନକଙ୍କ ପୂର୍ବ ସମୟରେ ବର୍ତ୍ତମାନ ଥିଲେ । ଉକ୍ତ ପୌରାଣିକ ପ୍ରମାଣମାନଙ୍କରୁ ତଥା ଅନେକ ସାମ୍ପ୍ରଦାୟିକ ଗ୍ରନ୍ଥ ପ୍ରମାଣରୁ ଶ୍ରୀ ନିମ୍ବାର୍କଙ୍କର ଶ୍ରୀକୃଷ୍ଣାବତାରରେ ବର୍ତ୍ତମାନ ରହିବା ସ୍ପଷ୍ଟଭାବରେ ସିଦ୍ଧ ହେଉଛି ଏବଂ ଏହା ଏହି ସମ୍ପ୍ରଦାୟର ବୃଦ୍ଧ-ପରଂପରା ମଧ୍ୟ ପ୍ରସିଦ୍ଧ । ... ... ଶ୍ରୀ ଭାଗବତର ବେଦସ୍ତୁତିର ୮୭ ଅଧ୍ୟାୟରେ ଅରୁଣି ନାମ ଦେଖାଯାଉଛି । ଏହି ସମ୍ପ୍ରଦାୟର ଦର୍ଶନ ଗ୍ରନ୍ଥରେ ଯେଉଁପ୍ରକାର ହୃଦୟକମଳରେ ପରମାତ୍ମାଙ୍କ ଧ୍ୟାନ ବିଧି କୁହାଯାଇଛି ଏହି ଶ୍ଳୋକରେ ମଧ୍ୟ ସେହି ବିଧି ବର୍ଣ୍ଣିତ ଯଥା—

ଉଦର ମୁପାସତେ ଋଷିବର୍ତ୍ମସୁ କୂର୍ପଦୃଶଃ
ପରିସର ପଦ୍ଧତି ହୃଦୟମାରୁଣୟୋ ଦହରମ୍
ତତ ଉଦଗାଦନନ୍ତ ତବଧାମ ଶିରଃପରମ୍ ।
ପୁନରିହ ସମିତ୍ୟ ନ ପତନ୍ତି କୃତାନ୍ତମୁଖେ ।

ପ୍ରମାଣ :— ଭାଗବତର ଷଷ୍ଠ ସ୍କନ୍ଧ ପଞ୍ଚର ଅଧ୍ୟାୟରେ ଶଙ୍ଖଚୂଡ଼ର ଉପାଖ୍ୟାନରେ ମଧ୍ୟ ଅରୁଣି ଋଷିଙ୍କ ନାମ ଭଗବତ ପ୍ରିୟ ସୁପ୍ରସିଦ୍ଧ ଅନ୍ୟ ଋଷିମାନଙ୍କ ନାମ ପରିଗଣନରେ ଅଛନ୍ତି । ଯଥା—

"ଦୁର୍ବାସା ଯାଜ୍ଞବଲ୍କ୍ୟଶ୍ଚ ଜାତୁକର୍ଣ୍ଣସ୍ତଥାରୁଣି ।"

ପୁଣି, "ବଶିଷ୍ଠ ଇନ୍ଦ୍ରଃ ପ୍ରମଦସ୍ତତୋ ଗୃତ୍ସମଦୋଽସିତଃ
କକ୍ଷୀବାନ୍ ଗୌତମୋଽତ୍ରିଶ୍ଚ କୌଶିକୋଽଥ
ସୁଦର୍ଶନଃ । ୧୨: ସ୍କ ୯ ଅ ।

ନିମ୍ବାର୍କ ଶ୍ରୀ ଭଗବାନଙ୍କ ସୁଦର୍ଶନ ଅବତାର ହୋଇଥିବା ହେତୁ ନିମ୍ବାର୍କଙ୍କ ଅନ୍ୟନାମ ସୁଦର୍ଶନ । ଏହି ଶ୍ଲୋକର "ସୁଦର୍ଶନ" ଶବ୍ଦ ଶ୍ରୀ ନିମ୍ବାର୍କଙ୍କୁ ବୁଝାଉଅଛି । ସାମ୍ପ୍ରଦାୟିକ ସନ୍ଥମାନଙ୍କରେ ମଧ୍ୟ ଏହିଭଳି ଲେଖା ହୋଇଛି । ଏହିସବୁ ଯୁକ୍ତି ଓ ପ୍ରମାଣରୁ ଏହି କଥା ସୁସ୍ପଷ୍ଟ ହୋଇ ସିଦ୍ଧ ହେଉଛି ଯେ, ଶ୍ରୀ ନିମ୍ବାର୍କ ଭଗବାନ ଏହି ପ୍ରାଚୀନ ମହର୍ଷିମାନଙ୍କ ଭିତରେ ଥିଲେ । ଏ ମହର୍ଷିମାନେ ଶ୍ରୀ କୃଷ୍ଣାବତାର ସମୟରେ ବର୍ତ୍ତମାନ ଥିଲେ । ଏହି ସବୁ ପ୍ରମାଣରୁ ଶ୍ରୀ ନିୟମାନନ୍ଦ, ଶ୍ରୀ ହରିପ୍ରିୟାଚାର୍ଯ୍ୟ, ଅରୁଣି, ସୁଦର୍ଶନ ଇତ୍ୟାଦି ସୁପ୍ରସିଦ୍ଧ ନାମ ନିମ୍ବାର୍କ ଚାର୍ଯ୍ୟଙ୍କର ।" [ ଶ୍ରୀ ନିମ୍ବାର୍କ ମହା ମୁନୀନ୍ଦ୍ର । ହି । ପୃ ୬—୨ ]

ପଣ୍ଡିତ କିଶୋର ଦାସଙ୍କ ଯୁକ୍ତି ଓ ଅନୁମାନ ସମସ୍ତେ ଗ୍ରହଣ କରି ନ ପାରନ୍ତି । ତେବେ ଶ୍ରୀ ନିମ୍ବାର୍କ ଆଚାର୍ଯ୍ୟ ଯେ ଜଣେ ପ୍ରଧାନ ଭକ୍ତ ଏବଂ ସେ ଯେ ବହୁଶତାବ୍ଦୀ ପୂର୍ବେ ଜନ୍ମଗ୍ରହଣ କରିଥିଲେ ଏଥିରେ ସନ୍ଦେହ ନାହିଁ ।

ସ୍ୱାମୀ ପ୍ରଜ୍ଞାନାନନ୍ଦଙ୍କ ମତରେ ଶ୍ରୀ ନିମ୍ବାର୍କଙ୍କ ସ୍ଥିତିକାଳ ଏକାଦଶ ଶତାବ୍ଦୀ । ସ୍ୱାମୀଜୀ ଲେଖିଛନ୍ତି— × × ଭେଦା ଭେଦ ବାଦୀ ଭାସ୍କରାଚାର୍ଯ୍ୟଙ୍କ କାଳ ଅଷ୍ଟମ ଶତାବ୍ଦୀ । ନିମ୍ବାର୍କ ଭାସ୍କରଙ୍କ

ପରବର୍ତ୍ତୀ । ସେହିହେତୁ ଅମେ ନିମ୍ବାର୍କଙ୍କ କାଳ ଏକାଦଶ ଶତାବ୍ଦୀ ବୋଲି ନିର୍ଦ୍ଦେଶ କଲୁ । ଏ ବିଷୟରେ ଅନ୍ୟ କାରଣ ଏହି— ବେଦାନ୍ତ କୌଶୁଭ ଅନନ୍ତରାମ ଅଚାର୍ଯ୍ୟଙ୍କ ଜୀବନ ଚରିତ ଲେଖି- ଅଛନ୍ତି । ସେଥିରେ ଦେବାଚାର୍ଯ୍ୟଙ୍କ କାଳ ବିକ୍ରମ ସମ୍ବତ୍ ୧୧୧୨ (ଯୁଗରୁଦ୍ରେନ୍ଦ୍ର) ବର୍ଷ ବୋଲି ନିର୍ଦ୍ଦେଶ କରି ଅଛନ୍ତି । ଅମର ମତେନ୍ତୁଏ ୧୧୧୨ ସମ୍ବତ୍ ନୁହେଁ, ଶକାବ୍ଦ । ୧୧୧୨ ଶକାବ୍ଦ ଦେବାଚାର୍ଯ୍ୟଙ୍କ ସ୍ଥିତି କାଳ ବୋଲି ଗ୍ରହଣକଲେ ୧୨୯୦ ଖ୍ରୀଷ୍ଟାବ୍ଦ ଅର୍ଥାତ୍ ଦ୍ୱାଦଶ ଶତାବ୍ଦୀର ଶେଷଭାଗରେ ସେ ବର୍ତ୍ତମାନ ଥିଲେ । ଦଶମ ଶତାବ୍ଦୀରେ ବୈଦାନ୍ତିକ ଭାସ୍କର ଓ ଦ୍ୱାଦଶ ଶତାବ୍ଦୀରେ ଦେବାଚାର୍ଯ୍ୟ ବର୍ତ୍ତମାନ ଥିବାରୁ ନିମ୍ବାର୍କଙ୍କ କାଳ ୧୧ଶ ଶତାବ୍ଦୀ ହେବା ସମୀଚୀନ ।" (ବେଦାନ୍ତ ଦର୍ଶନେର ଇତିହାସ (୧ମ ଭା-ପୃ ୩୭୬ ।)

ସ୍ୱାମୀ ଶ୍ରୀ ପ୍ରଜ୍ଞାନାନନ୍ଦଙ୍କ ଏ ମତ ସମୀଚୀନ ବୋଲି ବୋଧ ହେଉ ନାହିଁ । ଶ୍ରୀ ନିମ୍ବାର୍କ ଅଚାର୍ଯ୍ୟଙ୍କୁ ଭାସ୍କରାଚାର୍ଯ୍ୟଙ୍କ ପରବର୍ତ୍ତୀ ବୋଲି ସେ ଧରି ନେଇ ଅନୁଚ୍ଛେଦରେ ପଡ଼ିଅଛନ୍ତି । ଭାସ୍କରାଚାର୍ଯ୍ୟ ଶ୍ରୀ ନିମ୍ବାର୍କଙ୍କ ପୂର୍ବବର୍ତ୍ତୀ ବୋଲି କହିବା ପାଇଁ କୌଣସି ପ୍ରମାଣ ନାହିଁ । ସ୍ୱାମୀଜୀ କହନ୍ତି ଯେ ଶ୍ରୀ ନିମ୍ବାର୍କ ଭାସ୍କରାଚାର୍ଯ୍ୟଙ୍କ ଗ୍ରନ୍ଥଦ୍ୱାରା ପ୍ରଭାବିତ । କିନ୍ତୁ ମତବାଦର ସାଦୃଶ୍ୟ ଛଡ଼ା ଅନ୍ୟ କୌଣସି ଉପାଦାନ ଉପରେ ନିର୍ଭର କରି ଏପରି ସିଦ୍ଧାନ୍ତରେ ପହଞ୍ଚିବାର କାରଣ ନାହିଁ ।

ଦେବାଚାର୍ଯ୍ୟଙ୍କ ସମୟ ନିରୂପଣ କରିବାକୁ ଯାଇ ବେଦାନ୍ତ କୌଶୁଭ ଅନନ୍ତରାମ ଯେଉଁ ବିକ୍ରମ ସମ୍ବତର ଉଲ୍ଲେଖ କରିଛନ୍ତି ତାହାହିଁ ଠିକ୍ ବୋଲି ମନେହୁଏ । ୧୧୧୨କୁ ବିକ୍ରମ ସମ୍ବତ୍ ବୋଲି ଧରି ନେଲେ ଦେବାଚାର୍ଯ୍ୟ ଖ୍ରୀଷ୍ଟାବ୍ଦ ୧୦୫୨ କି ୧୦୫୫ ରେ

ପ୍ରାଦୁର୍ଭୂତ ହୋଇଥିଲେ ବୋଲି କହିବାକୁ ହେବ । ଦେବାଚାର୍ଯ୍ୟ ତାଙ୍କର "ବେଦାନ୍ତ ଜାହ୍ନବୀ" ନାମକ ସୂତ୍ରବୃତ୍ତି ଗ୍ରନ୍ଥର ପ୍ରାରମ୍ଭରେ ଲେଖିଛନ୍ତି :—

"ମୁମୁକ୍ଷୁ ଜନୋଦ୍ଧିଧୀର୍ଷୟା ଶ୍ରୀ ପୁରୁଷୋତ୍ତମ ଶ୍ରୀମୁଖାନ୍ନାଦ ବେଦାନ୍ତ ସନ୍ତତଂ ସନାତନମପି କଳୌ ନଷ୍ଟାମ୍ ଉଦ୍ଧର୍ତ୍ତୁମ- ବନୀତଳାବତୀର୍ଣ୍ଣୋ ଭଗବାନ୍ ସୁଦର୍ଶନାବତାରେ ନିୟମାନନ୍ଦାଖ୍ୟ ଆଚାର୍ଯ୍ୟୋଃ ବେଦାନ୍ତ ପାରିଜାତ ସୌରଭାଖ୍ୟ ଗ୍ରନ୍ଥରଚନୟା ବାକ୍ୟାର୍ଥରୂପେଣ ବ୍ୟାଚକାର । ତଦପି ଭଗବାନ୍ ଶ୍ରୀନିବାସାଚାର୍ଯ୍ୟା ନିଗଦଂ ବକ୍ଷ୍ୟତେ" ଇତ୍ୟାଦ । ଏଥିରୁ ଜଣାଯାଉଛି ଯେ ଦେବାଚାର୍ଯ୍ୟ ଶ୍ରୀ ନିମ୍ବାର୍କ ଓ ଶ୍ରୀ ଶ୍ରୀନିବାସାଚାର୍ଯ୍ୟଙ୍କ ପରେ ଏ ଗ୍ରନ୍ଥରଚନା କରିଅଛନ୍ତି । ଅତଏବ ଦେବାଚାର୍ଯ୍ୟଙ୍କ ଆବିର୍ଭାବ ପୂର୍ବରୁ ଅର୍ଥାତ୍ ୧୧ଶ ଶତାବ୍ଦୀ ପୂର୍ବରୁ ଶ୍ରୀ ନିମ୍ବାଦିତ୍ୟଙ୍କ ଆବିର୍ଭାବ ହୋଇଥିଲା ।

ତେବେ କେଉଁ ସମୟରେ ସେ ଆବିର୍ଭୂତ ହୋଇଥିଲେ ତାହା ସଠିକ ନିର୍ଦ୍ଧାରଣ କରିବା ସହଜ ନୁହେଁ ।

ଶ୍ରୀ ନିମ୍ବାଦିତ୍ୟ ଦ୍ୱୈତା ଦ୍ୱୈତ ମତବାଦ ପ୍ରଚାର କରିଥିଲେ । ସେ ତାଙ୍କର ବେଦାନ୍ତ ଗ୍ରନ୍ଥମାନଙ୍କରେ ଔଡୁଲୋମୀ ପ୍ରଭୃତି ପୂର୍ବ ଋଷିମାନଙ୍କର ମତ ଉଦ୍ଧାର କରିଛନ୍ତି, ଜୈନ ଓ ବୌଦ୍ଧ ପଣ୍ଡିତ- ମାନଙ୍କର ମତ ଉଦ୍ଧାର କରି ସ୍ଥଳବିଶେଷରେ ଖଣ୍ଡନ କରିଛନ୍ତି । କିନ୍ତୁ ଶଙ୍କରଙ୍କ ମତ ଉଦ୍ଧାର କରିନାହାନ୍ତି । ଅଦ୍ୱୈତବାଦକୁ ଖଣ୍ଡନ ନ କଲେ ଦ୍ୱୈତା ଦ୍ୱୈତାବାଦ ସ୍ଥାପନ କରିବା ସମ୍ଭବ ନୁହେଁ । ଅଦ୍ୱୈତ ବାଦର ପ୍ରଧାନ ପ୍ରଚାରକ ଶ୍ରୀ ଶଙ୍କରଙ୍କ ମତ ପ୍ରାୟ ସବୁ ବୈଦାନ୍ତିକ ଉଦ୍ଧାର କରିଛନ୍ତି । କିନ୍ତୁ ଶ୍ରୀ ନିମ୍ବାର୍କ ଏପରି କରିନାହାନ୍ତି କାହିଁକି ? ଅନ୍ୟ ଋଷିମାନଙ୍କ ମତ ଉଦ୍ଧାର କରି, ଯାହାର ମତକୁ ଖଣ୍ଡନ

ରଚିତ ଗ୍ରନ୍ଥମାନଙ୍କର ନାମ ତଳେ ଦିଆଗଲା । ଏଥିରୁ କେତୋଟି ଅପ୍ରକାଶିତ ରହିଛି । ପଣ୍ଡିତ ଶ୍ରୀ କିଶୋରୀ ଦାସ "ଆଗ୍ରର୍ଯ୍ୟ ପରଂପରା ପରିଚୟ"ରେ ଯେଉଁ ତାଲିକା ଦେଇଛନ୍ତି ତାହା ଉଦ୍ଧାର କରାଗଲା ।

୧- ବେଦାନ୍ତ ପାରିଜାତ ସୌରଭ-( ବ୍ରହ୍ମସୂତ୍ର ବାକ୍ୟାର୍ଥ )
୨-ମନ୍ତ୍ର ରହସ୍ୟ ଷୋଡ଼ଶୀ ( ଅଥର୍ବବେଦୀୟ ଅଷ୍ଟାଦଶାକ୍ଷର ଶ୍ରୀ ଗୋପାଳ ମନ୍ତ୍ରରାଜର କାରିକାରୂପ ବ୍ୟାଖ୍ୟା )
୩-ପ୍ରପନ୍ନ କଳ୍ପବଲ୍ଲୀ (ପାଞ୍ଚରାତ୍ରିକ ମୁକୁନ୍ଦ ମନ୍ତ୍ରର କାରିକାରୂପ ବ୍ୟାଖ୍ୟା )
୪-ବେଦାନ୍ତ ଦଶଶ୍ଳୋକୀ
୫- ପ୍ରପତ୍ତି ଚିନ୍ତାମଣି ।
୬- ସଦାଗୁରୁ ପ୍ରକାଶ ।
୭- ଶ୍ରୀ ଭଗବଦ୍‌ଗୀତା—ବାକ୍ୟାର୍ଥ
୮- ବହୁ ସ୍ତୋତ୍ର—

ପ୍ରାକଟ୍ୟ ତିଥି—ଏହାଙ୍କର ପ୍ରାକଟ୍ୟ ତିଥି କାର୍ତ୍ତିକ ପୂର୍ଣ୍ଣିମା ।

ପ୍ରଧାନ ବାସସ୍ଥାନ—ପ୍ରଧାନ ବାସସ୍ଥାନ ମଥୁରାଜିଲ୍ଲା ଗୋବର୍ଦ୍ଧନ ନିକଟସ୍ଥ "ଶ୍ରୀ ନିମ୍ବଗ୍ରାମ" । ଏଠାରେ ଶ୍ରୀ ସୁଦର୍ଶନ (ନିମ୍ବାର୍କ) ଙ୍କର ଗୋଟିଏ ମନ୍ଦିର ଅଛି ।

ତିନିପ୍ରଧାନ ଶିଷ୍ୟ—ଏହାଙ୍କର ତିନିଜଣ ପ୍ରଧାନ ଶିଷ୍ୟ ଥିଲେ (୧) ଶ୍ରୀ ନିବାସା ଗୃର୍ଯ୍ୟ (୨) ଶ୍ରୀ ଔଦୁମ୍ବରଗୃର୍ଯ୍ୟ (୩) ଶ୍ରୀ ଗୌରମୁଖାଗୃର୍ଯ୍ୟ । ଏ ସମ୍ପ୍ରଦାୟର ମତ ଅନୁସାରେ ଏମାନେ ଆଗୃର୍ଯ୍ୟ । ଶ୍ରୀ ନିମ୍ବାର୍କଙ୍କୁ ମିଶାଇ ଚାରି ଆଗୃର୍ଯ୍ୟ ।



# ତୃତୀୟ ଅଧ୍ୟାୟ
## ଆଚାର୍ଯ୍ୟ ପରମ୍ପରା ପରିଚୟ

୧—ହଂସାବତାର—

ତସ୍ମୈ ନମୋ ଭଗବତେ ପୁରୁଷାୟ ଭୂମ୍ନେ
ବିଶ୍ୱାୟ ବିଶ୍ୱଗୁରବେ ପରଦେବତାୟ ।
ନାରାୟଣାୟ ଋଷୟେ ଚ ନରୋତ୍ତମାୟ
ହଂସାୟ ସଂଯତଗିରେ ନିଗମେଶ୍ୱରାୟ ॥

ପିତାମହ ବ୍ରହ୍ମା ଯେତେବେଳେ ସୃଷ୍ଟି ଆରମ୍ଭ କଲେ ସେତେବେଳେ ସନତ୍କୁମାର ତାଙ୍କୁ ଏହି ପ୍ରଶ୍ନ କଲେ :—

ଗୁଣେଷ୍ୱାବିଶତେ ଚେତୋ ଗୁଣାଶ୍ଚେତସି ଚ ପ୍ରଭୋ !
କଥମନ୍ୟୋନ୍ୟ ସନ୍ତ୍ୟାଗୋ ମୁମୁକ୍ଷୋରତି ତିତିର୍ଷୋଃ ॥

ଚତୁର୍ମୁଖ ବ୍ରହ୍ମା ଏ ପ୍ରଶ୍ନର ଉତ୍ତର ଦେଇ ପାରିଲେ ନାହିଁ । ସେ ଭଗବାନ୍ ଶ୍ରୀ ବାସୁଦେବଙ୍କୁ ପ୍ରାର୍ଥନା କଲେ । ଭଗବାନ୍ ବାସୁଦେବ ହଂସ ରୂପରେ ବ୍ରହ୍ମାଙ୍କ ଅଗ୍ରରେ ଉପସ୍ଥିତ ହେଲେ । ହଂସାବତାର ଭଗବାନ ବ୍ରହ୍ମାଙ୍କ ମାନସପୁତ୍ର ସନକାଦିଙ୍କୁ ସମ୍ପ୍ରଦାୟ ଭାବରେ ଜନ୍ମୀ ବିଦ୍ୟା ଉପଦେଶ ଦେଲେ ।

"ସୃଷ୍ଟିର ପ୍ରାରମ୍ଭ କାଳରେ ସର୍ବାଦୌ ଏହି ସମ୍ପ୍ରଦାୟର ଉତ୍ପତ୍ତି ହୋଇ ଥିବାରୁ ଏ ସମ୍ପ୍ରଦାୟର ଅନ୍ୟ ନାମ ସର୍ବାଦ୍ୟ ସମ୍ପ୍ରଦାୟ । କ୍ଷୀର ଓ ନୀରକୁ ଅଲଗା କରିବାରେ ହଂସ ସମର୍ଥ । ତତ୍ତ୍ୱାତତ୍ତ୍ୱ ବିବେଚନା କରିବାରେ ସମର୍ଥ ସ୍ୱୟଂ ହଂସ ଏହି ସମ୍ପ୍ରଦାୟ ପ୍ରତିଷ୍ଠା କରିଥିବାରୁ ଏ ସମ୍ପ୍ରଦାୟର ଅନ୍ୟ ଏକ ନାମ ହଂସ ସମ୍ପ୍ରଦାୟ ।

ସୃଷ୍ଟିର ଆରମ୍ଭରୁ ପ୍ରଳୟ ପର୍ଯ୍ୟନ୍ତ ଏହି ସମ୍ପ୍ରଦାୟ ରହିଥିବ । ସେହିହେତୁ ଏହାର ଅନ୍ୟ ଏକ ନାମ ଅନାଦି ସମ୍ପ୍ରଦାୟ ।

ସ୍ୱୟଂ ଭଗବାନ୍ ବିଷ୍ଣୁ ହଂସ ଅବତାରରେ ଏ ସମ୍ପ୍ରଦାୟ ପ୍ରବର୍ତ୍ତନ କରିଥିବାରୁ ଏହି ସମ୍ପ୍ରଦାୟ ବୈଷ୍ଣବ ସମ୍ପ୍ରଦାୟ ନାମରେ ମଧ୍ୟ ପରିଚିତ ।

ଶ୍ରୀ ହଂସାବତାରଙ୍କ ପ୍ରାକଟ୍ୟ ତିଥି କାର୍ତ୍ତିକ ଶୁକ୍ଳନବମୀ । ଏହିଦିନ ପ୍ରାତଃ ଜନ୍ମୋତ୍ସବ ।

୨—ସନକାଦି—ଶ୍ରୀମଦ୍ଭାଗବତ ତୃତୀୟସ୍କନ୍ଧ ପ୍ରଥମ ଅଧ୍ୟାୟରେ ଲେଖାଅଛି ଯେ, ବ୍ରହ୍ମା ସୃଷ୍ଟି କରିବାର ସଂକଳ୍ପ କରିବା ସମୟରେ କଣ ସୃଷ୍ଟି କରିବେ କିଛି ସ୍ଥିର କରି ପାରିଲେ ନାହିଁ । କିଛିକ୍ଷଣ ଚିନ୍ତାର ପରେ ପ୍ରଥମେ ଅବିଦ୍ୟାକୁ ସୃଷ୍ଟି କଲେ । ଏ ଅବିଦ୍ୟାରୁ ତାମିସ୍ର, ଅନ୍ଧତାମିସ୍ର, ମୋହ ଓ ମହାମୋହ ପ୍ରଭୃତିର ଉତ୍ପତ୍ତି ହେଲା । ଏମାନଙ୍କ ଉତ୍ପତ୍ତିରେ ବ୍ରହ୍ମା ସୁଖ ଲାଭ କରି ପାରିଲେ ନାହିଁ । ଏସବୁ ଅସତ୍ ସୃଷ୍ଟି ଦେଖି ବ୍ରହ୍ମା ମନରେ ଅଶାନ୍ତି ଭୋଗ କଲେ । ତେଣୁ ପରେ ସ୍ଥିର କଲେ ଯେ, ଏ ସୃଷ୍ଟି ବିଶେଷ ଉପକାରି ହେବ ନାହିଁ, ଅନ୍ୟପ୍ରକାର ସୃଷ୍ଟି ଦରକାର । ସେ ଇଚ୍ଛା କରିବା ମାତ୍ରେ ତାଙ୍କର ଚାରୋଟି ମାନସ ପୁତ୍ର—ସନକ, ସନନ୍ଦ, ସନାତନ ଓ ସନତ୍କୁମାର—ଉତ୍ପନ୍ନ ହେଲେ । ବ୍ରହ୍ମାଙ୍କର ଆଶା ଥିଲା ଯେ ଏ ଚାରିପୁତ୍ର ସଂସାର ଧର୍ମ ପାଳନ କରିବେ । ଯେତେବେଳେ ସେ ପୁତ୍ରମାନଙ୍କୁ ତାଙ୍କ ସୃଷ୍ଟି କରିବାକୁ କହିଲେ ସେମାନେ ପିତାଙ୍କୁ ଉତ୍ତର ଦେଲେ ଯେ ସଂସାର ଦୁଃଖ ଓ ମାୟାମୟ । ସୁତରାଂ ଏ ସଂସାରରେ ପ୍ରବେଶ କରି ମୋହ ଓ ଦୁଃଖ ପାଶରେ ଆବଦ୍ଧ ହେବା ସେମାନଙ୍କର ଇଚ୍ଛା ନୁହେଁ । ସେମାନେ ନୈଷ୍ଠିକ ଓ ଊର୍ଦ୍ଧ୍ୱରେତାଃ

ହେଲେ; ଭଗବତ୍ ଧ୍ୟାନ ଓ ଭଗବତ୍‌ଲୀଳା ପରାୟଣରେ କାଳାତିପାତ କଲେ ।

ସନକାଦି ନିବୃତ୍ତି ଓ ମୋକ୍ଷମାର୍ଗର ଅଗ୍ରଣୀ । ଋଷିମାନଙ୍କ ଭିତରେ ଏମାନେହିଁ ପ୍ରଥମରେ ଏହି ଧର୍ମ ପ୍ରଚାର କଲେ । ସେହି ହେତୁ ଏହି ସମ୍ପ୍ରଦାୟକୁ ସନକାଦି ସମ୍ପ୍ରଦାୟ ମଧ୍ୟ କୁହାଯାଏ ।

ସନକାଦିଙ୍କର ପ୍ରାକଟ୍ୟ ତିଥି କାର୍ତ୍ତିକ ଶୁକ୍ଳ ନବମୀ ( ଅକ୍ଷୟ-ନବମୀ ) । ଏହିଦିନ ପ୍ରାତଃ ଜନ୍ମୋତ୍ସବ ।

୩—ଭଗବାନ୍ ଦେବର୍ଷି ନାରଦ—ଭଗବାନ୍ ଦେବର୍ଷି ନାରଦ ଅଷ୍ଟାଦଶାକ୍ଷର ମନ୍ତ୍ରରାଜ ପ୍ରଥମେ ସନକାଦିଙ୍କଠାରୁ ଶୁଣିଥିଲେ । ବିଷ୍ଣୁ ଯାମଳରେ ଲେଖାଅଛି :—

ନାରାୟଣ ମୁଖାମ୍ଭୋଜାନ୍ମନ୍ତ୍ର ସ୍ତ୍ୱଷ୍ଟାଦଶାକ୍ଷରଃ
ଆବିର୍ଭୂତଃ କୁମାରୈସ୍ତୁ ଗୃହୀତ୍ୱା ନାରଦାୟ ଚ ॥
ଉପଦିଷ୍ଟଃ ସ୍ୱଶିଷ୍ୟାୟ ନିମ୍ବାର୍କାୟ ଚ ତେନ ତୁ ।
ଏବଂ ପରଂପରା ପ୍ରାପ୍ତୋ ମନ୍ତ୍ରସ୍ତ୍ୱଷ୍ଟାଦଶାକ୍ଷରଃ ॥

ନାରଦ ମହର୍ଷି ଏହି ସମ୍ପ୍ରଦାୟର ମନ୍ତ୍ର ଦେବତା ଓ ତତ୍ତ୍ୱ-ମାନଙ୍କ ଭିତରେ ପ୍ରବର୍ତ୍ତନ କରିଥିଲେ । ସେହିହେତୁ ଏ ସମ୍ପ୍ରଦାୟର ଅନ୍ୟ ଏକନାମ ଦେବର୍ଷି ସମ୍ପ୍ରଦାୟ ବା ଋଷି ସମ୍ପ୍ରଦାୟ । ଭଗବାନ ନାରଦଙ୍କଠାରୁ ନିମ୍ବାର୍କ ମହାମୁନୀନ୍ଦ୍ର, ଏହି ମନ୍ତ୍ର ଶିକ୍ଷା ଲାଭ କରିଥିଲେ । ଦେବର୍ଷି ନାରଦଙ୍କ ପ୍ରାକଟ୍ୟ ତିଥି ମାର୍ଗଶୀର ଶୁକ୍ଳ ଦ୍ୱାଦଶୀ ( ବ୍ୟଞ୍ଜନ ଦ୍ୱାଦଶୀ ) । ଏହିଦିନ ପ୍ରାତଃ ଉତ୍ସବ ।

୪- ଶ୍ରୀ ନିମ୍ବାର୍କ ମହାମୁନୀନ୍ଦ୍ର—( ଅନ୍ୟତ୍ର ଦିଆଯାଇଛି )

୪- ଶ୍ରୀ ଶ୍ରୀନିବାସାଚାର୍ଯ୍ୟ—ଏ ସମ୍ପ୍ରଦାୟର ଲୋକେ ଏହାଙ୍କୁ ଭାଷ୍ୟକାର ଶ୍ରୀ ଶ୍ରୀନିବାସାଚାର୍ଯ୍ୟ ବୋଲି କହନ୍ତି । ଏ ନିମ୍ବାର୍କଙ୍କର ପ୍ରଧାନ ଶିଷ୍ୟ । ଶ୍ରୀନିବାସ ଶ୍ରୀ ପାଞ୍ଚଜନ୍ୟ ଶଙ୍ଖଙ୍କ ଅବତାର । ସ୍ୱୀୟ ଗୁରୁଙ୍କ ଭେଦାଭେଦବାଦ ଶ୍ରୁତି ଓ ଯୁକ୍ତିବଳରେ ପ୍ରତିପନ୍ନ କରିବା ନିମିତ୍ତ ଏ ନିଜ ଗ୍ରନ୍ଥ "ବେଦାନ୍ତ କୌସ୍ତୁଭ"ରେ ଚେଷ୍ଟାକରିଅଛନ୍ତି । ଶ୍ରୀ ଦେବାଚାର୍ଯ୍ୟ ଶ୍ରୀନିବାସାଚାର୍ଯ୍ୟଙ୍କ ଗ୍ରନ୍ଥ ଓ ଶ୍ରୀ ନିମ୍ବାର୍କଙ୍କ ଗ୍ରନ୍ଥକୁ ପ୍ରାମାଣିକ ଗ୍ରନ୍ଥରୂପେ ଗ୍ରହଣ କରିଛନ୍ତି । ଶ୍ରୀ କେଶବାଚାର୍ଯ୍ୟ ଶ୍ରୀନିବାସାଚାର୍ଯ୍ୟଙ୍କ ଭାଷ୍ୟ "ବେଦାନ୍ତ କୌସ୍ତୁଭ" ର ବ୍ୟାଖ୍ୟା ଲେଖିଛନ୍ତି । ଏହାଙ୍କ ନିବାସ ସ୍ଥାନ ମଥୁରାଜିଲ୍ଲା ଗୋବର୍ଦ୍ଧନ ନିକଟସ୍ଥ ରାଧାକୁଣ୍ଡ ପାଖରେ । ଏ ସ୍ଥାନ ଶ୍ରୀ ଶ୍ରୀନିବାସାଚାର୍ଯ୍ୟଙ୍କ ବୈଠକ ନାମରେ ପ୍ରସିଦ୍ଧ । ଏଠାରେ ଆଚାର୍ଯ୍ୟଙ୍କ ଚରଣ ଚିହ୍ନ ଅଛି । ଏହାଙ୍କର ଜନ୍ମୋତ୍ସବ ମାଘ ଶୁକ୍ଳ ପଞ୍ଚମୀ ( ବସନ୍ତ ପଞ୍ଚମୀ )

ଶ୍ରୀନିବାସାଚାର୍ଯ୍ୟଙ୍କ ଲିଖିତ ଗ୍ରନ୍ଥମାନଙ୍କର ତାଲିକା:—

୧) ବେଦାନ୍ତ କୌସ୍ତୁଭ । ବ୍ରହ୍ମସୂତ୍ରର ମହାଭାଷ୍ୟ ।
(୨) ଖ୍ୟାତି ନିର୍ଣ୍ଣୟ ।
(୩) ଲଘୁ ସ୍ତବରାଜ ।
(୪) ପାରିଜାତ ସୌରଭ ଭାଷ୍ୟ ।
(୫) ରହସ୍ୟ ପ୍ରବନ୍ଧ ।
(୬) କଠୋପନିଷଦ ଭାଷ୍ୟ ।

୬-ଶ୍ରୀ ଔଦୁମ୍ବରାଚାର୍ଯ୍ୟ—ଶ୍ରୀ ଔଦୁମ୍ବରାଚାର୍ଯ୍ୟ କୃତ ଗ୍ରନ୍ଥ—(୧) ଔଦୁମ୍ବର ସଂହିତା (୨) ବ୍ରତପଞ୍ଚକ (୩) ଶ୍ରୀ ନିମ୍ବାର୍କସ୍ତୋତ୍ର । ଏହାଙ୍କ ବାସସ୍ଥାନ କୁରୁକ୍ଷେତ୍ର ନିକଟରେ ପପନାବା 'ଗ୍ରାମ । ଜିଲ୍ଲା କର୍ଣ୍ଣାଲ· ପୋ: ଢୋଲ ।

କରିବାର କଥା, ( ଶଙ୍କରଙ୍କ ମତ ) ତାଙ୍କୁ ବା ଉଲ୍ଲେଖ ନ କଲେ କାହିଁକି ? ଏହାର ପ୍ରଧାନ ହୋଇପାରେ, ଶ୍ରୀ ନିମ୍ବାର୍କ ସ୍ୱାମୀ ଶ୍ରୀ ଶଙ୍କରଙ୍କ ପୂର୍ବରୁ ଅବତୀର୍ଣ୍ଣ ହୋଇଥିଲେ ।

ନିମ୍ବାର୍କ ସମ୍ପ୍ରଦାୟର ବୈଷ୍ଣବମାନଙ୍କର ଧାରଣା ଯେ ଦ୍ୱୈତା-ଦ୍ୱୈତବାଦ ଶ୍ରୀ ନିମ୍ବାର୍କ ସ୍ୱାମୀଙ୍କଠାରୁହିଁ ଆରମ୍ଭ । ଅବଶ୍ୟ ଔଡ଼ୁଲୋମୀ ପ୍ରଭୃତ ଏହାର ସୂଚନା ଆଗରୁ ଦେଇଯାଇଥିଲେ କିନ୍ତୁ ଶ୍ରୀ ନିମ୍ବାର୍କ ସ୍ୱାମୀହିଁ ଏହା ସ୍ପଷ୍ଟ ଓ ଶୃଙ୍ଖଳିତ ଭାବରେ ବ୍ୟକ୍ତ କଲେ। ଭଗବତ୍ପାଦ ଶ୍ରୀ ନିମ୍ବାର୍କଙ୍କ ପୂର୍ବରୁ ଅବତୀର୍ଣ୍ଣ ହୋଇଥିଲେ ନିମ୍ବାର୍କ ନିଜ ଗ୍ରନ୍ଥମାନଙ୍କରେ ତାଙ୍କର ମତ ଉଦ୍ଧାର କରିବା ସମ୍ଭବ ହୋଇଥାନ୍ତା ।

ଶ୍ରୀ ନିମ୍ବାର୍କ ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ ପୂର୍ବରୁ ଅବତୀର୍ଣ୍ଣ ହୋଇଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଶ୍ରୀ ନିମ୍ବାର୍କ ଶ୍ରୀରାମାନୁଜାଚାର୍ଯ୍ୟଙ୍କ ପୂର୍ବବର୍ତ୍ତୀ ଥିବାର ମଧ୍ୟ ପ୍ରମାଣ ଅଛି । ଭବିଷ୍ୟ ପୁରାଣର ୨୧ ଶ ଅଧ୍ୟାୟରେ ଲେଖାଅଛି :—

ବିଷ୍ଣୁ ସ୍ୱାମୀ ପ୍ରଥମ ତୋ ନିମ୍ବାଦିତ୍ୟ ଦ୍ୱିତୀୟକଃ
ମଧ୍ୱାଚାର୍ଯ୍ୟସ୍ତୃତୀୟସ୍ତୁ ତୁର୍ଯ୍ୟୋ ରାମାନୁଜଃ ସ୍ମୃତଃ ।

ରାମାନୁଜାଚାର୍ଯ୍ୟ ୧୨ଶ ଶତାବ୍ଦୀରେ ବର୍ତ୍ତମାନ ଥିଲେ । ଶ୍ରୀ ନିମ୍ବାର୍କାଚାର୍ଯ୍ୟ ଶ୍ରୀ ଶଙ୍କରାଚାର୍ଯ୍ୟ ଓ ଶ୍ରୀ ରାମାନୁଜାଚାର୍ଯ୍ୟଙ୍କଠାରୁ ପ୍ରାଚୀନ, ଏଥିରେ ସନ୍ଦେହ ନାହିଁ ।

ନିମ୍ବାର୍କ ସମ୍ପ୍ରଦାୟ—ଶ୍ରୀ ନିମ୍ବାର୍କଙ୍କ ନାମାନୁସାରେ ଏ ସମ୍ପ୍ରଦାୟର ନାମ ନିମ୍ବାର୍କସମ୍ପ୍ରଦାୟ । ଶ୍ରୀ ନିମ୍ବାର୍କ ସୁଦର୍ଶନା-ବତାର ଥିବା ଯୋଗୁଁ ଏ ସମ୍ପ୍ରଦାୟକୁ ସୁଦର୍ଶନ ସମ୍ପ୍ରଦାୟ ମଧ୍ୟ କୁହାଯାଏ । ଶ୍ରୀ ନିମ୍ବାର୍କ ସର୍ବ ପ୍ରଥମେ ଦ୍ୱୈତାଦ୍ୱୈତ ମତ ପ୍ରଚାର କଲେ ବୋଲି ଏ ସମ୍ପ୍ରଦାୟର ଲୋକମାନଙ୍କର ଧାରଣା । ଏହାଙ୍କ

(୭) ଶ୍ରୀ ଗୌରମୁଖାଚାର୍ଯ୍ୟ—ଏହାଙ୍କର ଗ୍ରନ୍ଥ ଶ୍ରୀ ନିମ୍ବାର୍କ ସହସ୍ର ନାମ ଏହାଙ୍କ ବିଷୟ ଭବିଷ୍ୟ ପୁରାଣରେ ଲେଖାଅଛି । ବାସସ୍ଥାନ-ନୈମିଷାରଣ୍ୟ ।

(୮) ଶ୍ରୀ ବିଶ୍ୱାଚାର୍ଯ୍ୟ—ଏହାଙ୍କର ଜନ୍ମୋତ୍ସବ ଫାଲଗୁନ ଶୁକ୍ଳ ଚତୁର୍ଥୀ । ଏହାଙ୍କ ରଚିତ ଗ୍ରନ୍ଥ—୧-ପଞ୍ଚ ପାଠି ସ୍ତୋତ୍ର ୨-ପ୍ରପନ୍ନ ଚିନ୍ତାମଣିର ଟୀକା ।

(୯) ଶ୍ରୀ ପୁରୁଷୋତ୍ତମାଚାର୍ଯ୍ୟ-( ବିବରଣକାର ) ଏ ମହାତ୍ମା ସର୍ବ ପ୍ରଥମେ ଦଶଶ୍ଲୋକୀ ଓ ରହସ୍ୟ ବିବରଣ କରିଥିବାରୁ ଏହାଙ୍କର "ବିବରଣକାର" ସଂଜ୍ଞା ହେଲା । ଏହାଙ୍କର ଜନ୍ମୋତ୍ସବ ଚୈତ୍ର ଶୁକ୍ଳ ଷଷ୍ଠୀ । ଏହାଙ୍କ ଗ୍ରନ୍ଥମାନଙ୍କର ନାମ—୧-ବେଦାନ୍ତ ରତ୍ନ ମଞ୍ଜୁଷା—(ଦଶଶ୍ଲୋକୀର ବୃହତ୍ ଭାଷ୍ୟ) ୨-ସିଦ୍ଧାନ୍ତ କ୍ଷୀରାର୍ଣ୍ଣବ । ୩-ରହସ୍ୟ ବିବରଣ ।

(୧୦) ଶ୍ରୀ ବିଳାସାଚାର୍ଯ୍ୟ—ଜନ୍ମୋତ୍ସବ; ବୈଶାଖ ଶୁକ୍ଳ ଅଷ୍ଟମୀ ।
(୧୧) ଶ୍ରୀ ସ୍ୱରୂପାଚାର୍ଯ୍ୟ—ଜନ୍ମୋତ୍ସବ; ଜ୍ୟୈଷ୍ଠ ଶୁକ୍ଳ ପ୍ରତିପଦା ।
(୧୨) ଶ୍ରୀ ମାଧବାଚାର୍ଯ୍ୟ—ଜନ୍ମୋତ୍ସବ; ଅଷାଢ ଶୁକ୍ଳ ଦଶମୀ ।
(୧୩) ଶ୍ରୀ ବଳଭଦ୍ରାଚାର୍ଯ୍ୟ—ଜନ୍ମୋତ୍ସବ; ଶ୍ରାବଣ ଶୁକ୍ଳ ତୃତୀୟା ।
(୧୪) ଶ୍ରୀ ପଦ୍ମାଚାର୍ଯ୍ୟ—ଜନ୍ମୋତ୍ସବ; ଭାଦ୍ରବ ଶୁକ୍ଳ ଦ୍ୱାଦଶୀ ।
(୧୫) ଶ୍ରୀ ଶ୍ୟାମାଚାର୍ଯ୍ୟ—ଜନ୍ମୋତ୍ସବ; ଅଶ୍ୱିନ ଶୁକ୍ଳ ତ୍ରୟୋଦଶୀ ।
(୧୬) ଶ୍ରୀ ଗୋପାଳାଚାର୍ଯ୍ୟ—ଜନ୍ମୋତ୍ସବ; ଭାଦ୍ରବ ଶୁକ୍ଳ ଏକାଦଶୀ ।
(୧୭) ଶ୍ରୀ କୃପାଚାର୍ଯ୍ୟ—ଜନ୍ମୋତ୍ସବ; ମାର୍ଗଶୀର ପୂର୍ଣ୍ଣିମା ।
(୧୮) ଶ୍ରୀ ଦେବାଚାର୍ଯ୍ୟ—ଜନ୍ମ ମାଘ ଶୁକ୍ଳ ପଞ୍ଚମୀ । ଏହାଙ୍କର ଜନ୍ମ ସ୍ଥାନ ତୈଲଙ୍ଗ ଦେଶରେ । ଏହାଙ୍କର ଜନ୍ମ ଶ୍ରୀ ୧୦୫୬ରେ । ଏ ଶ୍ରୀ କୃପାଚାର୍ଯ୍ୟଙ୍କ ଶିଷ୍ୟ ଥିଲେ । ଏ କୃପାଚାର୍ଯ୍ୟଙ୍କଠ

ସମସ୍ତ ବେଦାନ୍ତଶାସ୍ତ୍ର ଅଧ୍ୟୟନ କରିଥିଲେ । ଦେବାଚାର୍ଯ୍ୟଙ୍କୁ ଭଗବାନଙ୍କ ହସ୍ତସ୍ଥିତ ପଦ୍ମର ଅବତାର ବୋଲି ଏ ସମ୍ପ୍ରଦାୟର ଲୋକେ ଭାବନ୍ତି । ଏହାଙ୍କ ରଚିତ ଗ୍ରନ୍ଥ—୧-ବେଦାନ୍ତ ଜାହ୍ନବୀ; ୨-ଭକ୍ତି ରତ୍ନାଞ୍ଜଳି ।

ଦ୍ୱାଦଶ ଆଚାର୍ଯ୍ୟ—ନିମ୍ବାର୍କ ସମ୍ପ୍ରଦାୟମତରେ ଏହି ବାରଜଣ ଗୁରୁଙ୍କୁ ଦ୍ୱାଦଶ ଅଗ୍ରଣୀ ବୋଲଯାଏ ଯଥା—୧-ଶ୍ରୀନିବାସାଗ୍ରଣୀ; ୨-ବିଶ୍ୱାଗ୍ରଣୀ; ୩-ପୁରୁଷୋତ୍ତମାଅଗ୍ରଣୀ; ୪-ବିଳାସାଗ୍ରଣୀ; ୫-ସ୍ୱରୂପାଗ୍ରର୍ଯ୍ୟ; ୬-ମାଧବାଗ୍ରର୍ଯ୍ୟ; ୭-ବଳଭଦ୍ର ଗ୍ରର୍ଯ୍ୟ; ୮-ପଦ୍ମାଗ୍ରର୍ଯ୍ୟ; ୯-ଶ୍ରୀ ଶ୍ୟାମାଗ୍ରର୍ଯ୍ୟ; ୧୦-ଗୋପାଳାଗ୍ରର୍ଯ୍ୟ; ୧୧-କୃପାଗ୍ରଣୀ; ୧୨-ଦେବାଗ୍ରଣୀ ।

(୧୯) ଶ୍ରୀ ସୁନ୍ଦର ଭଟ୍ଟାଚାର୍ଯ୍ୟ—ଜନ୍ମୋତ୍ସବ; ମାଘ ଶୁକ୍ଳ ଦ୍ୱିତୀୟା । ଏହାଙ୍କର ଗ୍ରନ୍ଥ—୧-ସେତୁବେଦାନ୍ତ ଜାହ୍ନବୀର ବିସ୍ତୃତ ଟୀକା। ୨-ପ୍ରପନ୍ନ ସୁରତରୁ ମଞ୍ଜରୀ, ପ୍ରପନ୍ନ କଳ୍ପବଲ୍ଲୀର ଟୀକା। ୩-ମନ୍ତ୍ରାର୍ଥ ରହସ୍ୟ, ରହସ୍ୟ ଷୋଡ଼ଶୀର ଟୀକା । ୪-ପ୍ରପନ୍ନ ବୃତ୍ତି ନିର୍ଣ୍ଣୟ ସନ୍ଦର୍ଭ । ୫-ଗୋପାଳୋପନିଷଦ୍‌ର ଭାଷ୍ୟ । ୬-କାଳନିର୍ଣ୍ଣୟ ସନ୍ଦର୍ଭ ।

(୨୦) ଶ୍ରୀ ପଦ୍ମନାଭ ଭଟ୍ଟାଚାର୍ଯ୍ୟ—ଜନ୍ମୋତ୍ସବ; ବୈଶାଖ କୃଷ୍ଣ ତୃତୀୟା ।

(୨୧) ଶ୍ରୀ ଉପେନ୍ଦ୍ର ଭଟ୍ଟାଚାର୍ଯ୍ୟ—ଜନ୍ମୋତ୍ସବ ଚୈତ୍ର ଶୁକ୍ଳ ଚତୁର୍ଥୀ ।

(୨୨) ଶ୍ରୀ ରାମଚନ୍ଦ୍ର ଭଟ୍ଟାଚାର୍ଯ୍ୟ—ଜନ୍ମୋତ୍ସବ ବୈଶାଖ ଶୁକ୍ଳ ପଞ୍ଚମୀ ।

(୨୩) ଶ୍ରୀ ବାମନ ଭଟ୍ଟାଗ୍ରଣୀ—ଜନ୍ମୋତ୍ସବ; ଜ୍ୟେଷ୍ଠ କୃଷ୍ଣ ଷଷ୍ଠୀ ।

(୨୪) ଶ୍ରୀକୃଷ୍ଣ ଭଟ୍ଟାଗ୍ରର୍ଯ୍ୟ—ଜନ୍ମୋତ୍ସବ; ଆଷାଢ଼ କୃଷ୍ଣନବମୀ ।

(୨୫) ଶ୍ରୀ ପଦ୍ମାକର ଭଟ୍ଟାଗ୍ରଣୀ—ଜନ୍ମୋତ୍ସବ; ଆଷାଢ଼ କୃଷ୍ଣ ଅଷ୍ଟମୀ।

(୨୬) ଶ୍ରୀ ଶ୍ରବଣ ଭଟ୍ଟାଗ୍ରର୍ଯ୍ୟ—ଜନ୍ମୋତ୍ସବ; କାର୍ତ୍ତିକ କୃଷ୍ଣ ନବମୀ।

(୨୭) ଶ୍ରୀ ଭୂର ଭଟ୍ଟାଚାର୍ଯ୍ୟ—ଜନ୍ମୋତ୍ସବ; ଅଶ୍ୱିନ କୃଷ୍ଣ ଦଶମୀ ।
(୨୮) ଶ୍ରୀ ମାଧବ ଭଟ୍ଟାଚାର୍ଯ୍ୟ; ଜନ୍ମୋତ୍ସବ; କାର୍ତ୍ତିକ କୃଷ୍ଣ ଏକାଦଶୀ ।
(୨୯) ଶ୍ରୀ ଶ୍ୟାମ ଭଟ୍ଟାଚାର୍ଯ୍ୟ—ଜନ୍ମୋତ୍ସବ;ଚୈତ୍ର ଦ୍ୱାଦଶୀ ।
(୩୦) ଶ୍ରୀ ଗୋପାଳ ଭଟ୍ଟାଚାର୍ଯ୍ୟ—ଜନ୍ମୋତ୍ସବ; ପୌଷ କୃଷ୍ଣ ଏକାଦଶୀ ।

---

## ଚତୁର୍ଥ ଅଧ୍ୟାୟ

### ଦ୍ୱୈତାଦ୍ୱୈତ ( ବା ଭେଦାଭେଦ ) ସିଦ୍ଧାନ୍ତ

ନିମ୍ବାର୍କ ସମ୍ପ୍ରଦାୟର ଦର୍ଶନ ଶାସ୍ତ୍ରୀର ଭାଷ୍ୟ—ନିମ୍ବାର୍କ ସମ୍ପ୍ରଦାୟ ଭିତରେ ଶ୍ରୀ ନିମ୍ବାଦିତ୍ୟଙ୍କ "ବେଦାନ୍ତ ପାରିଜାତ ସୌରଭ" ଓ ଶ୍ରୀ ଶ୍ରୀନିବାସାଚାର୍ଯ୍ୟଙ୍କ "ବେଦାନ୍ତ କୌସ୍ତୁଭ" ଅତି ଉଚ୍ଚ ସ୍ଥାନ ଅଧିକାର କରିଛନ୍ତି । ବେଦାନ୍ତ ଭାଷ୍ୟ ବ୍ୟାଖ୍ୟାମାନଙ୍କ ଭିତରେ ଏ ଦୁଇଟି ଗ୍ରନ୍ଥର ଆଦର ଯଥେଷ୍ଟ ଅଛି । ନିମ୍ବାଦିତ୍ୟଙ୍କ ଦର୍ଶନ ବୁଝିବାକୁ ହେଲେ ଶ୍ରୀ ଶ୍ରୀନିବାସାଚାର୍ଯ୍ୟଙ୍କ ବ୍ୟାଖ୍ୟା ବିଶେଷ ଭାବରେ ଜାଣିବା ଦରକାର । "ବେଦାନ୍ତ କୌସ୍ତୁଭ" ବେଦାନ୍ତ-ବ୍ୟାଖ୍ୟା-ଗ୍ରନ୍ଥମାନଙ୍କ ଭିତରେ ଏକ ପ୍ରଧାନ ଗ୍ରନ୍ଥ । ଶଙ୍କର ଭାଷ୍ୟରେ ଗୋବିନ୍ଦାନନ୍ଦ, ରାମାନୁଜ ଭାଷ୍ୟରେ ସୁଦର୍ଶନ, ମାଧ୍ୱଭାଷ୍ୟରେ ଜୟତୀର୍ଥ, ଶ୍ରୀ କଣ୍ଠ ଭାଷ୍ୟରେ ଅପ୍ପୟ୍ୟାଦୀକ୍ଷିତ ଏବଂ ନିମ୍ବାର୍କଭାଷ୍ୟରେ ଶ୍ରୀନିବାସାଚାର୍ଯ୍ୟ ଭାଷ୍ୟ ବ୍ୟାଖ୍ୟା ଲେଖି ଭାରତୀୟ ଦାର୍ଶନିକ ସାହିତ୍ୟରେ ଗୌରବମୟ ସ୍ଥାନ ଅଧିକାର କରିଅଛନ୍ତି ।

ନିମ୍ବାର୍କ ସମ୍ପ୍ରଦାୟର ବେଦାନ୍ତ ଭାଷ୍ୟ ଅତି ପ୍ରାଞ୍ଜଳ । ଏ ସମ୍ପ୍ରଦାୟ ଭେଦାଭେଦ ବାଦୀ । ଏମାନଙ୍କର ବେଦାନ୍ତ ବ୍ୟାଖ୍ୟାନ ଦ୍ୱୈତା ଦ୍ୱୈତ ପର । ଶ୍ରୀ ରାମାନୁଜ ସ୍ୱାମୀ ଯେପରି ବୈଧାୟନ

ବୃତ୍ତି ଅବଲମ୍ବନରେ ଶ୍ରୀଭାଷ୍ୟ ରଚନା କରିଥିଲେ । ଶ୍ରୀ ନିମ୍ବାର୍କସ୍ୱାମୀ ଔଡୁଲୋମୀଙ୍କ "ବେଦାନ୍ତସୂତ୍ର ବୃତ୍ତି" ଅବଲମ୍ବନରେ "ବେଦାନ୍ତ ପାରିଜାତ ସୌରଭ" ରଚନା କରିଥିଲେ । ନିମ୍ବାର୍କଙ୍କ ପରେ ତାଙ୍କ ଶିଷ୍ୟ ଶ୍ରୀ ଶ୍ରୀନିବାସାଚାର୍ଯ୍ୟଙ୍କ "ବେଦାନ୍ତ କୌସ୍ତୁଭ" ଅନ୍ୟ ଏକ ପ୍ରାମାଣ୍ୟ ଗ୍ରନ୍ଥ । କେଶବ କାଶ୍ମିରିଙ୍କ କୃତ "କୌସ୍ତୁଭ ପ୍ରଭା" ମଧ୍ୟ ଏକ ପ୍ରଧାନ ଗ୍ରନ୍ଥ । ଏଭଳି ଗୌରବ ପୂର୍ଣ୍ଣ ଗ୍ରନ୍ଥ କ୍ୱଚିତ୍ ଦେଖାଯାଏ । "ପରପକ୍ଷ ଗିରି ବଜ୍ର" ମଧ୍ୟ ଅନ୍ୟ ଏକ ପ୍ରଧାନ ଗ୍ରନ୍ଥ । "ପରପକ୍ଷ-ଗିରି ବଜ୍ର" ଗ୍ରନ୍ଥର ପ୍ରାରମ୍ଭରେ ନିମ୍ବାର୍କ ସମ୍ପ୍ରଦାୟର ବେଦାନ୍ତଭାଷ୍ୟର ମୂଳ ସମ୍ବନ୍ଧରେ ଲେଖାଅଛି:— "ଭଗବାନ ବାସୁଦେବଃ ପୁରୁଷୋତ୍ତମଃ ଶ୍ରୀକୃଷ୍ଣଃ × × ଭ୍ରାନ୍ତାନ୍ ସ୍ୱଭକ୍ତଜ୍ଞାନହୀନାନ୍ ସଙ୍କୀର୍ଣ୍ଣମତୀନ୍ ଜୀବାନ୍ ବୀକ୍ଷ୍ୟତେଷୁ ସ୍ୱଜ୍ଞାନଭକ୍ତିଂ ଦୃଢୟିତୁମ୍ କୃଷ୍ଣଦ୍ୱୈପାୟନ ରୂପେଣ ପରତତ୍ତ୍ୱ ପ୍ରକାଶକଂ ସମନ୍ୱୟାବିରୋଧ ସାଧନଫଲାଖ୍ୟାଧ୍ୟାୟ ଚତୁଷ୍ଟୟାତ୍ମକଂ ଶାରୀରକ ମୀମାଂସାଖ୍ୟ ବେଦାନ୍ତ ଶାସ୍ତ୍ରଂ ସୂତ୍ରୟାମାସ । ତସ୍ୟ ବ୍ୟାଖ୍ୟାନଂ ସୁଦର୍ଶନାବତାରଃ ଶ୍ରୀ ନିମ୍ବାର୍କାଚାର୍ଯ୍ୟୋ ବାକ୍ୟାର୍ଥ ରୂପେଣ ବେଦାନ୍ତ ପାରିଜାତ ସୌରଭାଖ୍ୟଂ ସଂଗୃହୀତବାନ । ତଦପି ଶଙ୍ଖାବତାର ଶ୍ରୀ ଶ୍ରୀନିବାସାଚାର୍ଯ୍ୟୋ ବେଦାନ୍ତ କୌସ୍ତୁଭାଖ୍ୟ ଭାଷ୍ୟ ରୂପେଣ ବିଶଦୟାମାସ ।" ଅର୍ଥାତ୍ ଭଗବାନ "ବାସୁଦେବ ପୁରୁଷୋତ୍ତମ ଶ୍ରୀକୃଷ୍ଣ ଭ୍ରାନ୍ତ ସ୍ୱଭକ୍ତି ବିବର୍ଜିତ ଜୀବମାନଙ୍କର ହୃଦୟରେ ସ୍ୱୀୟଭକ୍ତି ଦୃଢ଼ କରିବା ନିମନ୍ତ କୃଷ୍ଣଦ୍ୱୈପାୟନ ରୂପରେ ପରତତ୍ତ୍ୱ ପ୍ରକାଶକ ସମନ୍ୱୟ ଅବିରୋଧ ସାଧନ ଓ ଫଳ ଏହି ଚତୁରଧ୍ୟାୟାତ୍ମକ ବେଦାନ୍ତ ସୂତ୍ର ପ୍ରକାଶ କଲେ । ସୁଦର୍ଶନାବତାର ଶ୍ରୀ ନିମ୍ବାର୍କ ବେଦାନ୍ତ ପାରିଜାତ ସୌରଭ ନାମରେ ଏହାର ଏକ ବାକ୍ୟାର୍ଥ ପ୍ରକାଶ କଲେ । ତା ପରେ ଶ୍ରୀ

ଶଙ୍କରବତାର ଶ୍ରୀନିବାସାଚାର୍ଯ୍ୟ "ବେଦାନ୍ତ କୌସ୍ତୁଭ" ନାମରେ ତାର ଗୋଟିଏ ଭାଷ୍ୟ ରଚନା କଲେ ।

ବିଶ୍ୱାଚାର୍ଯ୍ୟଙ୍କ ଶ୍ରୁତିର ଚନ୍ଦ୍ରାମଣି, ପୁରୁଷୋତ୍ତମାଚାର୍ଯ୍ୟଙ୍କ ବେଦାନ୍ତରତ୍ନ ମଞ୍ଜୁଷା, କେଶବକାଶ୍ମିରୀ ଭଟ୍ଟାଚାର୍ଯ୍ୟଙ୍କ କୌସ୍ତୁଭ ପ୍ରଭା ପ୍ରଭୃତି ବ୍ରହ୍ମସୂତ୍ରର ଭାଷ୍ୟ ଏ ସମ୍ପ୍ରଦାୟର ଅତି ଆଦରଣୀୟ ସମ୍ପତ୍ତି । ଏ ଭିତରୁ କେତେଗୋଟି ଗ୍ରନ୍ଥ ବର୍ତ୍ତମାନ ଅଲଭ୍ୟ ।

ଔଡୁଲୋମୀଙ୍କ ବୃତ୍ତିର କେତେ ଅଂଶ ଶ୍ରୀ ନିମ୍ବାର୍କ ସ୍ୱାମୀ ତାଙ୍କର ଗ୍ରନ୍ଥମାନଙ୍କରେ ଉଦ୍ଧାର କରିଛନ୍ତି । କିନ୍ତୁ ଡୁଲୋମୀଙ୍କ ବୃତ୍ତିକୁ ଏ ସମ୍ପ୍ରଦାୟର ଲୋକେ ସାମ୍ପ୍ରଦାୟିକ ଗ୍ରନ୍ଥରୂପେ ଗ୍ରହଣ କରିନାହାନ୍ତି ।

ଅନ୍ୟାନ୍ୟ ସମ୍ପ୍ରଦାୟ ତୁଳନାରେ ଏ ସମ୍ପ୍ରଦାୟର ବିବରଣ-ମୂଳକ ଗ୍ରନ୍ଥ ଅତି ଅଳ୍ପ । ବ୍ରହ୍ମସୂତ୍ରର ବ୍ୟାଖ୍ୟା ଏ ସମ୍ପ୍ରଦାୟର ଅତି ସ୍ପଷ୍ଟ ।

## ନିମ୍ବାର୍କ ସମ୍ପ୍ରଦାୟର ଦାର୍ଶନିକ ମତବାଦ

ଏ ମତର ସାରାଂଶ :—

ବ୍ରହ୍ମ ସଗୁଣ ଓ ନିର୍ଗୁଣ—ଏହି ଅର୍ଥରେ ଦ୍ୱୈତାଦ୍ୱୈତ ।

ବ୍ରହ୍ମ ଓ ଜୀବ ଭିନ୍ନ ଓ ଅଭିନ୍ନ—ଏ ଅର୍ଥରେ ଭେଦାଭେଦ ବାଦ ।

ଜଗତ ଓ ବ୍ରହ୍ମ ଭିନ୍ନ ଅଭିନ୍ନ

ଜୀବ ଚେତନ, ଜଗତ ଜଡ଼ ।

ଜଗତ ବ୍ରହ୍ମାତ୍ମକ, ଜଗତ ବ୍ରହ୍ମର ପରିଣାମ ।

ବ୍ରହ୍ମର ଶକ୍ତି ସ୍ୱାଭାବିକ, ବ୍ରହ୍ମଶକ୍ତିର ବିକ୍ଷେପରେ ହିଁ ଜଗତର ପରିଣାମ ।

ଏହି ସାରାଂଶକୁ ବିସ୍ତାର କରି ନିମ୍ବାର୍କ ସମ୍ପ୍ରଦାୟର ମହାତ୍ମା-ମାନେ ଅତି ଉତ୍କୃଷ୍ଟ ଗ୍ରନ୍ଥ ଲେଖିଯାଇଛନ୍ତି ।

ଏହି ସଂକ୍ଷିପ୍ତ ବିଷୟଟିକୁ ବୁଝାଇବା ପାଇଁ ଯେଉଁ ଅନ୍ୟାନ୍ୟ ବିଷୟର ବ୍ୟବହାର ହୋଇଛି ତାହାର ତାଲିକା ଦେବା ଏକାବେଳକେ ଅସମ୍ଭବ । ତେବେ ଅତି ସଂକ୍ଷେପରେ ଏ ଗ୍ରନ୍ଥକର ପରିଚୟ ଦେବା ପାଇଁ ଯତ୍ନରେ ଚେଷ୍ଟା କରି ଯାଉଛି । ଏଥିରୁ ମୋଟା ମୋଟି ଭାବରେ ଏ ସମ୍ପ୍ରଦାୟର ସିଦ୍ଧାନ୍ତ ସମ୍ବନ୍ଧରେ ଗୋଟିଏ ଧାରଣା ହୋଇପାରେ ।

ତତ୍ତ୍ୱ ତ୍ରିବିଧ :—ଯଥା-ଚିତ୍, ଅଚିତ୍ ଓ ବ୍ରହ୍ମ । ଚିତ୍ ଓ ଅଚିତ୍ ବ୍ରହ୍ମଠାରୁ ଭିନ୍ନ ହୋଇ ମଧ୍ୟ ଅଭିନ୍ନ । ଯଥା—

ଭୋକ୍ତା ଭୋଗ୍ୟଂ ପ୍ରେରିତାରଂଚ ମତ୍ୱା
ସର୍ବଂ ପ୍ରୋକ୍ତଂ ତ୍ରିବିଧଂ ବ୍ରହ୍ମ ଏତତ୍ ।

ବ୍ରହ୍ମର ସ୍ୱରୂପ—ଅଚିନ୍ତ୍ୟ ଅନନ୍ତ, ନିରତିଶୟ ସ୍ୱାଭାବିକ, ବୃହତ୍ତମ, ସ୍ୱରୂପଗୁଣାଦିର ଆଶ୍ରୟଭୂତ, ସର୍ବଜ୍ଞ, ସର୍ବଶକ୍ତି, ସର୍ବେଶ୍ୱର, ସର୍ବକାରଣରୂପ, ସମାନାତିଶୟ ଶୂନ୍ୟ, ସର୍ବବ୍ୟାପକ, ସର୍ବ-ବେଦୈକବେଦ୍ୟ ।

ଶ୍ରୁତିର ପ୍ରମାଣ । ଯଥା—

୧ । ପରାସ୍ୟ ଶକ୍ତି ବିବିଧୈବ ଶ୍ରୂୟତେ
ସ୍ୱାଭାବିକୀ ଜ୍ଞାନ ବଳକ୍ରିୟାଚ ।

୨ । ତମୀଶ୍ୱରାଣାଂ ପରମଂ ମହେଶ୍ୱରଂ
ତଂ ଦେବତାନାଂ ପରମଞ୍ଚ ଦୈବତଂ ।
ନ ତସ୍ୟ କାର୍ଯ୍ୟଂ କରଣଂଚ ବିଦ୍ୟତେ
ନ ତତ୍ସମଶ୍ଚାଭ୍ୟଧିକଶ୍ଚ ଦୃଶ୍ୟତେ ।

ଶ୍ରୀକୃଷ୍ଣ ହିଁ ଏହି ବ୍ରହ୍ମ ।

ଏହି ବ୍ରହ୍ମ ବା ଶ୍ରୀକୃଷ୍ଣ ପ୍ରାପ୍ତିର ଉପାୟ ହେଉଛି ଜ୍ଞାନ । ଜ୍ଞାନ—ଏହି ଜ୍ଞାନ ଦ୍ୱିବିଧ; ଧ୍ୟାନ—ଧ୍ରୁବାସ୍ମୃତି ଓ ପରାଭକ୍ତି । ଜ୍ଞାନ ପ୍ରାପ୍ତିର ଉପାୟ-ଶ୍ରବଣ, ମନନ, ନିଦିଧ୍ୟାସନ ।

ଜୀବ ଓ ତାହାର ଲକ୍ଷଣ:—ଅଚେତ୍ ବର୍ଗ ଛଡ଼ା ଜ୍ଞାନସ୍ୱରୂପ, ଜ୍ଞାତୃତ୍ୱ, କର୍ତୃତ୍ୱାଦି ଧର୍ମବିଶିଷ୍ଟ, ଭଗବଦାୟତ୍ତ ସ୍ୱରୂପ ସ୍ଥିତି ପ୍ରବୃତ୍ତି ଶୀଳ, ଅଣୁ ପରିମାଣ, ପ୍ରତିଶରୀରରେ ଭିନ୍ନ, ମୋକ୍ଷାର୍ହ ଚେତ୍ ପଦାର୍ଥ ହିଁ ଜୀବ ।

ଯଥା :—୧ । ଜ୍ଞାନ ସ୍ୱରୂପଂ ଚ ହରେରଧୀନଂ
ଶରୀର ସଂଯୋଗ ବିୟୋଗ ଯୋଗ୍ୟମ୍ ।
ଅଣୁଂହି ଜୀବ ପ୍ରତିଦେହଭିନ୍ନଂ
ଜ୍ଞାତୃତ୍ୱ ବନ୍ତଂ ଯଦନନ୍ତ ମାହୁଃ ।
ଅନାଦି ମାୟା ପରିଯୁକ୍ତ ରୂପଂ
ତ୍ୱେନଂ ବିଦୁର୍ବେ ଭଗବତ୍ ପ୍ରସାଦାତ୍ ।
ମୁକ୍ତଂ ଚ ଭକ୍ତଂ କିଲ ବଦ୍ଧମୁକ୍ତଂ
ପ୍ରଭେଦ ବାହୁଲ୍ୟ ମଥାପି ବୋଧ୍ୟମ ॥

୨ । ଅଣୁର୍ହ୍ୟେଷ ଆତ୍ମାଃଯଂ ବା ଏତେ ସି ନୀତାଃ ପୁଣ୍ୟଂ ପାପଚ୍ । ଅଚେତ୍ ପଦାର୍ଥ ତ୍ରିବିଧ:— ଯଥା—ପ୍ରାକୃତ ଅପ୍ରାକୃତ ଓ କାଳ । ଏହି ଅଚେତନ ପଦାର୍ଥ ମାୟା ଓ ପ୍ରଧାନାଦି ନାମରେ ମଧ୍ୟ ଅଭିହିତ ହୋଇଥାଅନ୍ତି ।

ପ୍ରାକୃତ ଦ୍ରବ୍ୟ—ଗୁଣ ତ୍ରୟାଶ୍ରୟଭୂତ ପଦାର୍ଥ ପ୍ରାକୃତ । ଏହା ନିତ୍ୟ ଓ ପରିଣାମାଦି ବିକାରୀ ।

"ଅଜାମେକାଂ ଲୋହିତ ଶୁକ୍ଳ କୃଷ୍ଣାଂ ।" ଏ ସବୁ ପ୍ରାକୃତ ଦ୍ରବ୍ୟ ।

ଅପ୍ରାକୃତ ଦ୍ରବ୍ୟ—ଅପ୍ରାକୃତ ଅଚେତ୍ ପଦାର୍ଥର ଲକ୍ଷଣ—ଏହା ନିର୍ଗୁଣ, ପ୍ରକୃତି ଓ କାଳଠାରୁ ଅତ୍ୟନ୍ତ ଭିନ୍ନ ଓ ଅଚେତନ । ପ୍ରକୃତ ମଣ୍ଡଳ ଭିନ୍ନ ଦେଶବୃତ୍ତି, ନିତ୍ୟ ବିଭୂତି ବିଶିଷ୍ଟ ପରବ୍ୟୋମ, ପରମ ପଦ, ବ୍ରହ୍ମଲୋକାଦି ଅପ୍ରାକୃତ ଅଚେତ୍ ପଦାର୍ଥ । ଏ ସବୁ ଧାମ ଅପ୍ରାକୃତ ଓ କାଳର ପ୍ରଭାବ ଶୂନ୍ୟ ।

କାଳ—କାଳ ନିତ୍ୟ ଓ ବିଭୁ । ଶ୍ରୁତି କହୁଛି—

"ଅଥ ନିତ୍ୟାନି ହବୈ ପୁରୁଷଃ ପ୍ରକୃତିଃ କାଳଃ"

ସବୁ ପ୍ରାକୃତ ପଦାର୍ଥ କାଳାଧୀନ ।

ବ୍ରହ୍ମଠାରୁ ଚେତ୍ ଓ ଅଚେତ୍ ପଦାର୍ଥ ଭିନ୍ନ ନୁହେଁ । ତାହାର ପ୍ରମାଣ ଯଥା—

(୧) ଅଜାମେକାଂ ଲୋହିତଶୁକ୍ଲ କୃଷ୍ଣାମିତ୍ୟାଦି ।

(୨) ନିର୍ଗୁଣଂ ତଜ୍ଜଗଦ ଯେ ନିରଜାଦି ପ୍ରଭବୋଽପ୍ୟୟମ୍
ଅଚେତନା ପରାର୍ଥାଚ ନିତ୍ୟା ସତତ ବିକ୍ରିୟା ।

(୩) ତଦଧୀନତ୍ୱାଦର୍ଥବତ୍ ।

(୪) ଆଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ ।

(୫) ଅଣୁର୍ହ୍ୟେଷ ଆତ୍ମା ।

(୬) ଅସ୍ତି ଖଲ୍ୱଣ୍ୱି ପରୈରଭୁତ ସ୍ମା ।
ଯୋଽୟଂ ସିତା ସିତୈଃ କର୍ମ ଫଲୈଃ ରଭିଭୂୟମାନଃ ।

(୭) ଅଥ ନିତ୍ୟାନି ହ ବୈପୁରୁଷଃ, ପ୍ରକୃତିଃ, କାଳଃ ।

ବ୍ରହ୍ମଚେତ୍‌ଠାରୁ ଅଭିନ୍ନ । ଏହାର ପ୍ରମାଣ ଯଥା—

(୧) ସଦେବ ସୌମ୍ୟେଦମଗ୍ର ଆସୀଦେକମେବା ଦ୍ୱିତୀୟମ୍ ।

(୨) ଆତ୍ମା ବା ଇଦମେକ ଏବାଗ୍ର ଆସୀତ୍ ।

(୩) ତତ୍ତ୍ୱ ମସି ।

(୪) ତ୍ୱଂ ବା ଅହମସ୍ମି ଭଗବୋ ଦେବତେ ।

(୫) ଅୟମାତ୍ମା ବ୍ରହ୍ମ ।

(୬) ତଦାତ୍ମାନମେବ ବେଦାହଂ ବ୍ରହ୍ମ ସ୍ମି ।

ଏହିପରି ଉଭୟ ବିଧ ପ୍ରମାଣ ଦ୍ୱାରା ବ୍ରହ୍ମ ଜୀବ ଓ ଅଚେତନଠାରୁ ଅଭିନ୍ନ ଏବଂ ବ୍ରହ୍ମ ଚିତ୍ ଓ ଅଚେତନଠାରୁ ଭିନ୍ନ ବୋଲି ସ୍ଥିର କରି ଏ ସମ୍ପ୍ରଦାୟ ଏପରି ଭାବରେ ସିଦ୍ଧାନ୍ତ କରନ୍ତି :—

"ଏବଂ ଶ୍ରୁତ୍ୟୁଭୟବିଧ ବ୍ୟାଖ୍ୟାନାଂ ସ୍ୱାର୍ଥେ ପ୍ରମାଣ୍ୟାତ୍ ଚିଦଚିଦୋର୍ଭିନ୍ନ ସ୍ୱରୂପୋୟ ଋଷୀନ୍ଦ୍ରିୟାଣାଂ ଭିନ୍ନ ସ୍ୱରୂପାଣାମପି "ନ ବୈ ବାଚୋ ନ ଚକ୍ଷୂଂଷି ନ ମନ ଇତ୍ୟାଚକ୍ଷତେ ପ୍ରାଣ ଇତ୍ୟେ ବା ଚକ୍ଷତେ" ଇତି ଛାନ୍ଦୋଗ୍ୟେ ପ୍ରାଣେନ୍ଦ୍ରିୟ ସମ୍ବାଦେ ପ୍ରସିଦ୍ଧାନାଂ ପ୍ରାଣାୟ ଯତ୍ତ୍ୱାଦେବ ପ୍ରାଣାଭିନ୍ନତ୍ୱବଦ୍ ବ୍ରହ୍ମାଯ୍ୟତ୍-ସ୍ଥିତି ପ୍ରବୃତ୍ତିମତ୍ତ୍ୱେନ ବ୍ରହ୍ମାଭିନ୍ନତ୍ୱ। ଚିଦ୍ ଚିଦ୍ "ଭିନ୍ନାଭିନ୍ନଂ ଲକ୍ଷଣ୍ୟଂ" ବ୍ରହ୍ମସୂତ୍ର କାରକାରଭିମତମ୍ ।"

ଏହାର ମର୍ମ—"ଛାନ୍ଦୋଗ୍ୟର ପ୍ରାଣେନ୍ଦ୍ରିୟ ସମ୍ବାଦର ପ୍ରମାଣରେ ବ୍ରହ୍ମ ଓ ଚିଦଚିତ୍ ପଦାର୍ଥର ଭିନ୍ନତ୍ୱ ଓ ଅଭିନ୍ନତ୍ୱ ଉଭୟବିଧ ପ୍ରମାଣ ମିଳେ । ସୁତରାଂ "ଭିନ୍ନାଭିନ୍ନ ଲକ୍ଷଣ୍ୟ" ହିଁ ବ୍ରହ୍ମସୂତ୍ର କାରକାର ଅଭିମତ ।

ଭାଷ୍ୟକାର ଶ୍ରୀ ଶ୍ରୀନିବାସାଚାର୍ଯ୍ୟ ବେଦାନ୍ତର ଯେଉଁ ଭାଷ୍ୟ ନିର୍ଦ୍ଦେଶ କରି ଅଛନ୍ତି ସେଥିରେ ମଧ୍ୟ ଏହି ଭିନ୍ନାଭିନ୍ନ ବା ଭେଦା-ଭେଦ ପ୍ରତିପାଦନ୍ତି । ସେ ଲେଖିଛନ୍ତି—"ଭାଷ୍ୟକୃଷ୍ଣାସ୍ୟ—ବ୍ରହ୍ମ ପ ଶବ୍ଦାଭିଧେୟଃ ସର୍ବଜ୍ଞଃ ସ୍ୱାଭାବିକାଚିନ୍ତ୍ୟାନନ୍ତ ଯାବଦାତ୍ମବୃତ୍ତିଗୁଣ

ଶକ୍ତ୍ୟାଦ୍ୟାଶ୍ରୟୋ ବ୍ରହ୍ମରୁଦ୍ରେନ୍ଦ୍ର ପ୍ରମୁଖ ପରମାଣୁ କାଳକର୍ମ ସ୍ୱଭାବାଦ ନିୟନ୍ତା ଦୋଷାସ୍ପୃଷ୍ଟ ସୀମ ଚିଦଚିତ ସ୍ୱାଭାବିକଃ "ଭେଦାଭେଦା-ଶ୍ରୟଃ" ଭଗବାନ୍ ବାସୁଦେବଃ ଶ୍ରୀ ପୁରୁଷୋତ୍ତମଃ ।" ଅପିଚ ପରବ୍ରହ୍ମ ନାରାୟଣ ବାସୁଦେବାଦ ଶବ୍ଦ ବାଚ୍ୟଃ ଶ୍ରୀକୃଷ୍ଣଃ ।"

ଏହି ସମ୍ପ୍ରଦାୟ ମତରେ "ଭେଦାଭେଦାଶ୍ରୟ ଶ୍ରୀକୃଷ୍ଣହିଁ ବେଦାନ୍ତର ବିଷୟ ଏବଂ ଶ୍ରୀଭଗବଦ୍ ଭାବ ଲକ୍ଷଣ ମୋକ୍ଷହିଁ ବେଦାନ୍ତ ଶାସ୍ତ୍ରର ପ୍ରୟୋଜନ ।"

ଭେଦାଭେଦ ସିଦ୍ଧାନ୍ତ ଓ ବ୍ରହ୍ମସୂତ୍ର—ମହର୍ଷି ବେଦବ୍ୟାସଙ୍କ ବେଦାନ୍ତ ଦର୍ଶନରେ ଭେଦାଭେଦ ସିଦ୍ଧାନ୍ତ ସ୍ପଷ୍ଟ ଭାବରେ ପ୍ରକାଶ ପାଇଛି, ଏହା ନିମ୍ବାର୍କ ସମ୍ପ୍ରଦାୟର ମତ । ସବୁ ଶ୍ରୁତିବାକ୍ୟର ଏହି ଅଭିପ୍ରାୟ, ଏହା ମଧ୍ୟ ଏମାନେ କହନ୍ତି ।

ଭେଦାଭେଦ ସିଦ୍ଧାନ୍ତ ପ୍ରତିପାଦନ କରିବାପାଇଁ ଶ୍ରୀ ଶ୍ରୀ ନିମ୍ବାର୍କସ୍ୱାମୀ ବେଦାନ୍ତ ଦର୍ଶନର ଭାଷ୍ୟ ସଂକ୍ଷେପରେ ରଚନା କଲେ । "ବେଦାନ୍ତ ପାରିଜାତ ସୌରଭ"ରେ ଅତି ସଂକ୍ଷେପରେ ସ୍ପଷ୍ଟ ଭାବରେ ବେଦାନ୍ତ ଦର୍ଶନର ମୂଳ ତତ୍ତ୍ୱ ଫୁଟାଇ ଦିଆଯାଇଛି । ବ୍ରହ୍ମସୂତ୍ରର ବ୍ୟାଖ୍ୟା ଯେପରି ଭାବରେ ଏହି ଗ୍ରନ୍ଥରେ କରାଯାଇଛି ତାହା ବାସ୍ତବିକ ପ୍ରଶଂସାର କଥା । ଶ୍ରୀ ନିମ୍ବାର୍କାଚାର୍ଯ୍ୟଙ୍କ ଶିଷ୍ୟ ଶ୍ରୀ ଶ୍ରୀନିବାସ ଆଚାର୍ଯ୍ୟ "ବେଦାନ୍ତ କୌସ୍ତୁଭ" ଗ୍ରନ୍ଥରେ ବିସ୍ତୃତ ଭାବରେ ଭେଦାଭେଦ ସିଦ୍ଧାନ୍ତ ଆଲୋଚନା କରିଅଛନ୍ତି । ପ୍ରତିପାଦ୍ୟ ଭେଦାଭେଦବାଦ ସମ୍ପର୍କରେ ବ୍ରହ୍ମସୂତ୍ରର କେତେକ ସୂତ୍ର ନିମ୍ନରେ ଦିଆଗଲା । ଶ୍ରୀନିମ୍ବାର୍କ ସ୍ୱାମୀ ଓ ଶ୍ରୀନିବାସାଚାର୍ଯ୍ୟ ଏ ଉଭୟଙ୍କ ଟୀକା ଆବଶ୍ୟକ ଅନୁସାରେ ଉଦ୍ଧାର କରାଗଲା ।

ଜୀବ :—ଅଂଶୋ ନାନାବ୍ୟପଦେଶାଦନ୍ୟଥା ଚାପି ଦଶ-କିତବାଦତ୍ୱ ମଧୀୟତ ଏକେ । ୨ୟ ଅ, ୩ୟ ପାଦ, ୪୨ ସୂତ୍ର ।

ଶ୍ରୀ ନିମ୍ବାର୍କ ଭାଷ୍ୟ—ଅଂଶାଂଶିଭାବାଜ୍ଜୀବ ପରମାତ୍ମନୋ ର୍ଭେଦାଭେଦୌ ପ୍ରଦର୍ଶୟତି । ପରମାତ୍ମନୋ ଜୀବୋଽଂଶଃ, "ଜ୍ଞାଜ୍ଞୌ ଦ୍ୱାବଜାବୀଶାନୀଶାବ" ଇତ୍ୟାଦିଭେଦବ୍ୟପଦେଶାତ୍ "ତତ୍ତ୍ୱମସି"-ଇତ୍ୟାଦିଭେଦବ୍ୟପଦେଶାଚ । ଅପି ଚ ଅଥର୍ବାଣିକାଃ "ବ୍ରହ୍ମ-ଦାଶା ବ୍ରହ୍ମଦାସା ବ୍ରହ୍ମେମେ କିତବା" ଇତି ବ୍ରହ୍ମଣୋହି କିତବାଦତ୍ୱ ମଧୀୟତେ ।

ଅର୍ଥ—ଏବେ ସୂତ୍ରକାର ଜୀବ ଓ ପରମାତ୍ମାଙ୍କ ଅଂଶାଂଶୀ ଭାବ ଅତଃ ଭେଦାଭେଦଭାବ ପ୍ରଦର୍ଶନ କରୁଅଛନ୍ତି । ଜୀବ ପରମାତ୍ମାଙ୍କ ଅଂଶ, କାରଣ "ଜ୍ଞାଜ୍ଞୌ ଦ୍ୱାବଜାବୀଶାନୀଶୌ" ( ଜ୍ଞ ଓ ଅଜ୍ଞ-ଈଶ୍ୱର ଓ ଜୀବ ଏ ଦୁହେଁ ଅନାଦି (ଜନ୍ମ ରହିତ, ନିତ୍ୟ ) ଇତ୍ୟାଦି ( ଶ୍ୱେତାଶ୍ୱତର ପ୍ରଭୃତି ) ଶ୍ରୁତି ବାକ୍ୟରେ ଜୀବ ଓ ଈଶ୍ୱରଙ୍କ ଭେଦ ପ୍ରଦର୍ଶିତ ହୋଇଅଛି ଏବଂ ଏହି ଜୀବକୁ ବ୍ରହ୍ମଠାରୁ ଅଭିନ୍ନ ବୋଲି ଶ୍ରୁତିର "ତତ୍ତ୍ୱମସି" ଇତ୍ୟାଦି ବାକ୍ୟଦ୍ୱାରା ଉପଦେଶ ଦିଆଗଲା । ଅଥର୍ବଶାଖିମାନେ କୈବର୍ତ୍ତମାନଙ୍କୁ, ଦାସମାନଙ୍କୁ ଏବଂ ଧୂର୍ତ୍ତମାନଙ୍କୁ ବ୍ରହ୍ମ କହୁଅଛନ୍ତି । ଅତଏବ ଜୀବ ଓ ବ୍ରହ୍ମ ଭିତରେ ଭେଦାଭେଦ ସମ୍ବନ୍ଧ ଅଛି ।

ଏହି ସୂତ୍ରକୁ ଶ୍ରୀ ଶ୍ରୀନିବାସାଚାର୍ଯ୍ୟ ସୁନ୍ଦର ଭାବରେ ବୁଝାଇ ଅଛନ୍ତି । ସେ ଲେଖିଛନ୍ତି—"ଜୀବସ୍ୟ କର୍ତ୍ତୃତ୍ୱଂ ବ୍ରହ୍ମାଧୀନ ମିତ୍ୟୁକ୍ତ-ମିଦାନୀଂ ଭେଦାଭେଦ ଶ୍ରୁତ୍ୟବିରୋଧେନ ତୟୋଃ ସମ୍ବନ୍ଧମାହ—କିମୟଂ ଜୀବୋ ବ୍ରହ୍ମଣୋ ଭିନ୍ନଃ ? ଉତାଭିନ୍ନଃ ? ଅଥୋସ୍ୱିତ୍ ବ୍ରହ୍ମଣୋଽଂଶୋଽତୋ ଭିନ୍ନାଭିନ୍ନଃ ? ଇତି ସଂଶୟେ ସ୍ୱାଭିଃ ସକାଶାତ୍ ପୃଥକ୍ ଏବ ପରମାତ୍ମନଃ ସକାଶାଜ୍ଜୀବୋଭିନ୍ନୋଽସ୍ତୁ । ଅଭେଦବାକ୍ୟ ନାଂ

ଗୌଣତ୍ୱାଦଜ୍ଞ ସର୍ବଜ୍ଞୟୋରଭେଦା ସମ୍ଭବାଚ୍ଚ । ଅଥବାଽଭିନ୍ନ ଏବାସ୍ତୁ, ଭେଦ ଶ୍ରୁତିନାଂ ଗୌଣତ୍ୱାତ୍ । ଭେଦାଭେଦୟୋର-ନ୍ୟୋଽନ୍ୟ ବିରୁଦ୍ଧତ୍ୱାଦଭେଦ ଶ୍ରୁତୀନାଂ ଭେଦଶ୍ରୁତିନାଂ ବା ଅବଶ୍ୟଂ ଗୌଣତ୍ୱମଙ୍ଗୀକର୍ତ୍ତବ୍ୟମିତି ପ୍ରାପ୍ତେଽଭିଧୀୟତେ । ନାୟଂ ଜୀବଃ ଶ୍ରୀପୁରୁଷୋତ୍ତମାଦତ୍ୟନ୍ତଂଭିନ୍ନଃ, ନାପ୍ୟତ୍ୟନ୍ତାଭିନ୍ନଃ, କିନ୍ତୁ ପରମାତ୍ମନୋଽଂଶଃ । "ଅଂଶୋହ୍ୟେଷ ପରସ୍ୟେତି ଶ୍ରୁତେଃ । ଅଂଶୋହି ଶକ୍ତିରୂପୋ ଗ୍ରାହ୍ୟଃ" "ଏଷ ପରସ୍ୟ ଶକ୍ତିଃ ଜୀବୋଽଲ୍ପ ଶକ୍ତିରସ୍ୱତନ୍ତ୍ରଃ" ଇତି ଶ୍ରୁତେଃ । ଝଣ୍ଡରୂପୋ ଧନାଦିବଦ୍ଧ୍ୱଂସଶୋ ନୈବ ଗୃହ୍ୟତେ, ଜୀବସ୍ୟ ବ୍ରହ୍ମଖଣ୍ଡତ୍ୱେ "ନିଷ୍କଲମ୍" ଇତ୍ୟାଦି ବାକ୍ୟ ବିରୋଧାଚ୍ଚନ ତଦଂଶତ୍ୱେ କେବଲ ଭେଦାପତ୍ତେଃ, "ତତ୍ତ୍ୱମସି" ଇତ୍ୟାଦି ବାକ୍ୟାବ୍ୟାକୋପ ପ୍ରସଙ୍ଗାତ୍ । ଅଂଶିତ୍ୱାବଚ୍ଛିନ୍ନାତ୍ ପରମପୁରୁଷ ସ୍ୱରୂପାତ୍ ସାର୍ବଜ୍ଞ୍ୟାଦିଗୁଣଗଣ ନିଧେରଂଶତ୍ୱାବଚ୍ଛିନ୍ନେନ ବନ୍ଧମୋକ୍ଷାର୍ହେଣ ସ୍ୱରୂପେଣ ଭିନ୍ନୋଽପ୍ୟଂଶସ୍ୟାଧୀନସ୍ଥିତି ପ୍ରବୃତ୍ତ୍ୟାଦି ମତ୍ତ୍ୱା ତଦଭିନ୍ନଃ । କୁତଃ ? "ନାନା ବ୍ୟପଦେଶାତ୍ ଭେଦବ୍ୟପଦେଶାତ୍ । ଅନ୍ୟଥା ଚ । ଅଭେଦ ବ୍ୟପଦେଶାଚ୍ଚ ।" ଉଭୟବିଧ ବାକ୍ୟାନାଂ ତୁଲ୍ୟ ବଲତ୍ୱାତ୍ ଜୀବ ପରମାତ୍ମନୋଃ ସ୍ୱାଭାବିକୌ ଭେଦାଭେଦୌ ଭବତ ଇତ୍ୟର୍ଥଃ । "ଯ ଆତ୍ମାନ ମନ୍ତରେ ଯମୟତି, ଅନ୍ତଃ ପ୍ରବିଷ୍ଟଃ ଶାସ୍ତା ଜନାନାମ୍, ଅସ୍ତି ହି ପରମଃ ସ୍ୱତନ୍ତ୍ରୋଽଧିଗୁଣଃ, ଜୀବୋଽଲ୍ପ ଶକ୍ତିର ସ୍ୱତନ୍ତ୍ରୋଽବରଃ, ଜ୍ଞାଜ୍ଞୌ ଦ୍ୱାବଜାବୀଶାନୀଶୌ" ଇତ୍ୟାଦି ଭେଦ ବ୍ୟପଦେଶଃ । ""ତତ୍ତ୍ୱମସ୍ୟୟମାତ୍ମା ବ୍ରହ୍ମ ଅହଂ ବ୍ରହ୍ମାସ୍ମି" ଇତ୍ୟାଦି ଭେଦବ୍ୟପଦେଶଃ । ଅପିଚୈକେ ଶାଖିନଃ ଅଥର୍ବାଣିକାଃ "ବ୍ରହ୍ମଦାଶା ବ୍ରହ୍ମଦାସା ବ୍ରହ୍ମୈବେମେ କିତବା ଇତ୍ୟେବ ବ୍ରହ୍ମଣୋ ଦାଶକିତବାଦିତ୍ୱମଧୀୟତେ ।

ବ୍ୟାଖ୍ୟାର୍ଥ—ଜୀବର କର୍ତ୍ତୃତ୍ୱ ବ୍ରହ୍ମର ଅଧୀନ, ଏହା ବର୍ଣ୍ଣିତ ହୋଇଛି । ବର୍ତ୍ତମାନ ( ବ୍ରହ୍ମ ସହିତ ଜୀବର ) ଭେଦ ଓ ଅଭେଦ ବିଷୟକ ଶ୍ରୁତିର ସାମଞ୍ଜସ୍ୟ ସ୍ଥାପିତକରି ଯେଉଁ ସମ୍ବନ୍ଧ ଅବଧାରିତ ହେଉଛି ତାହାକୁ ସୂତ୍ରକାର ଏହି ସୂତ୍ରରେ କହୁଅଛନ୍ତି—ଏହି ଜୀବ ବ୍ରହ୍ମଠାରୁ ଭିନ୍ନ କି ଅଭିନ୍ନ ? ଅଥବା ବ୍ରହ୍ମର ଅଂଶ ମାତ୍ର, ଅତଏବ ଭିନ୍ନା ଭିନ୍ନ ? ଏହି ସଂଶୟରେ ସୂତ୍ରକାର କହୁଅଛନ୍ତି— ( "ନରପତେରେବ ସର୍ବେଲୋକାଃ" ଇତ୍ୟାଦି ବାକ୍ୟରେ ଯେପରି ସମସ୍ତ ଲୋକଙ୍କୁ ନରପତିଙ୍କଠାରୁ ଅଭିନ୍ନ ବୋଲି କହିବା ପରେ ମଧ୍ୟ ) ଲୋକେ ନରପତିଙ୍କଠାରୁ ବାସ୍ତବରେ ଭିନ୍ନ, ସେହିପରି ଜୀବ ମଧ୍ୟ ପରମାତ୍ମା ଠାରୁ ଭିନ୍ନ—ଏହିମତ କହିବା ହିଁ ଉଚିତ । କାରଣ ପରମାତ୍ମାଙ୍କଠାରୁ ଜୀବର ଅଭେଦବିଷୟକ ବାକ୍ୟମାନଙ୍କର ଏହି-ପ୍ରକାର ଗୌଣ ଅର୍ଥ କରିବା ହିଁ ସଙ୍ଗତ । ( ବିଶେଷତଃ ) ସର୍ବଜ୍ଞ ଈଶ୍ୱର ଓ ଅସର୍ବଜ୍ଞ ଜୀବ—ଏ ଦୁଇ ଭିତରେ ଅଭେଦଭାବ ରହିବା ଅସମ୍ଭବ । ଅଥବା ଭେଦ ବିଷୟକ ଶ୍ରୁତିବାକ୍ୟର ବ୍ୟାଖ୍ୟା ଗୌଣାର୍ଥରେ କରି ଅଭେଦ ସମ୍ବନ୍ଧକୁ ସ୍ଥାପିତ କରିବା ସଙ୍ଗତ । ଭେଦ ସମ୍ବନ୍ଧ ଓ ଅଭେଦ ସମ୍ବନ୍ଧ—ଏ ଦୁହେଁ ପରସ୍ପର ବିରୁଦ୍ଧ ହେବା ହେତୁ—ଅଭେଦ-ବାଚକ ଶ୍ରୁତିର କିମ୍ବା ଭେଦବାଚକ ଶ୍ରୁତିର ଗୌଣାର୍ଥରେ ପ୍ରୟୋଗ ହେବା ସ୍ୱୀକାର କରିବାକୁ ହେବ । ଏହି ସଂଶୟକୁ ଦୂରୀଭୂତ କରିବା ପାଇଁ ସୂତ୍ରକାର କହୁଅଛନ୍ତି କି, ଶ୍ରୀ ପୁରୁଷୋତ୍ତମଙ୍କଠାରୁ ଜୀବ ଅତ୍ୟନ୍ତ ଭିନ୍ନ ନୁହେଁ କି ଅତ୍ୟନ୍ତ ଅଭିନ୍ନ ନୁହେ । ପରନ୍ତୁ ଜୀବ ପରମାତ୍ମାଙ୍କର ଅଂଶ । କାରଣ ଶ୍ରୁତିରେ କୁହାଯାଇଛି--"ଅଂଶୋ ହ୍ୟେଷ ପରସ୍ୟ" ( ଏହି ଜୀବ ପରମାତ୍ମାଙ୍କ ଅଂଶ ) । ପରନ୍ତୁ ଏହି ଅଂଶ ଶକ୍ତି ରୂପ ଅଂଶ, କାରଣରେ ଶ୍ରୁତିରେ କୁହାଯାଇଛି—"ଏଷ ପରସ୍ୟ ଶକ୍ତିଃ

ଜ୍ଞୋବାଽଲ୍ପ ଶକ୍ତିର ସ୍ୱତନ୍ତ୍ରଃ" ( ଏହି ଜୀବ ପରମାତ୍ମାଙ୍କ ଶକ୍ତି, ଏହି ଶକ୍ତି ଅଳ୍ପ ଶକ୍ତି ତଥା ଅସ୍ୱତନ୍ତ୍ର )। ଖଣ୍ଡର ଅଂଶ ନୁହେଁ କି ଧନାଦିର ଅଂଶ ନୁହେଁ—ଏପରି ବୁଝିବା ଠିକ ନୁହେଁ, କାରଣ ଶ୍ରୁତିରେ ବ୍ରହ୍ମଙ୍କୁ "ନିଷ୍କଳଂ" ( କଳା ବା ଖଣ୍ଡ—ଏଥିରୁ ରହିତ ) କୁହାଯାଇଛି । ଜୀବକୁ ବ୍ରହ୍ମର ଖଣ୍ଡ ବୋଲି କହିଲେ ଏହି ଶ୍ରୁତି ବାକ୍ୟ ସହିତ ଏହି ବାକ୍ୟର ବିରୋଧ ଉପସ୍ଥିତ ହେଉଛି ଏବଂ ଧନାଦିର ଅଂଶ କହିଲେ କେବଳ ଭେଦ ସମ୍ବନ୍ଧହିଁ ସ୍ଥାପିତ ହେଉଛି, ଏଥିରେ ମଧ୍ୟ "ତତ୍ତ୍ୱମସି" ଇତ୍ୟାଦି ଶ୍ରୁତିବାକ୍ୟ ସହିତ ବିରୋଧ ଉତ୍ପନ୍ନ ହେଉଛି । ଅତଏବ ସର୍ବଜ୍ଞତ୍ୱାଦି ଗୁଣସାଗର ଅଂଶୀ ପରମପୁରୁଷର ଅଂଶ ରୂପରେ ସ୍ଥିତିକୁ ଅବିରୋଧ ଭାବରେ ବନ୍ଧନ ଓ ମୋକ୍ଷ ପ୍ରାପ୍ତି ଯୋଗ୍ୟତାର କାରଣ ସ୍ୱରୂପ ଭିନ୍ନ ହେଲେ ମଧ୍ୟ ସମ୍ପୂର୍ଣ୍ଣ ରୂପରେ ପରମାତ୍ମାଙ୍କ ଅଧୀନ ଭାବରେ ଅବସ୍ଥିତ ନିମିତ୍ତ, ଜୀବ ଏହାଠାରୁ ଅଭିନ୍ନ । କାରଣ "ନାନା ବ୍ୟପଦେଶାତ୍" ( ଜୀବ ପରମାତ୍ମାଠାରୁ ଭିନ୍ନ, ଏପରି ଶ୍ରୁତିର ଉପଦେଶ ) ଏବଂ "ଅନ୍ୟଥାଚ"(ଅଭିନ୍ନ ବୋଲି ମଧ୍ୟ ଶ୍ରୁତିରେ ଉପଦେଶ ଦିଆଯାଇଛି), ଏହି ଦୁଇପ୍ରକାର ବାକ୍ୟ ସମାନ ବଳଶାଳୀ, ଅତଏବ ଜୀବ ଓ ପରମାତ୍ମା ଭିତରେ ସ୍ୱାଭାବିକ ( ଅତଏବ ନିତ୍ୟ ) ଭେଦାଭେଦ ସମ୍ବନ୍ଧ—ଏହାହିଁ ସୂତ୍ରାର୍ଥ । " ଯେ ଭିତରେ ରହି ଜୀବକୁ ଚାଳିତ କରୁଛି" "ଯେ ଅନ୍ତଃ ପ୍ରବିଷ୍ଟ ହୋଇ ଲୋକଙ୍କୁ ଶାସନ କରୁଛି" "ଆତ୍ମାହିଁ ସର୍ବ ଶ୍ରେଷ୍ଠ, ସ୍ୱତନ୍ତ୍ର ଓ ଗୁଣମାନଙ୍କର ଅଧିଷ୍ଠାତା; ଜୀବ ଅଳ୍ପ ଶକ୍ତି, ଅସ୍ୱତନ୍ତ୍ର ଓ ଅଶ୍ରେଷ୍ଠ", "ଈଶ୍ୱର ଅନାଦି ଏବଂ ସର୍ବଜ୍ଞ, ଜୀବ ଅନାଦି ହେଲେ ମଧ୍ୟ ଅସର୍ବଜ୍ଞ" ଇତ୍ୟାଦି ଶ୍ରୁତିବାକ୍ୟ ଜୀବ ଓ ପରମାତ୍ମାଙ୍କ ଭିତରେ ଭେଦ ଜ୍ଞାପିତ କରୁଛି । ତା ଛଡ଼ା "ତୁମେ ପରମାତ୍ମା" "ଏହି ଆତ୍ମା ବ୍ରହ୍ମ" "ମୁଁ ବ୍ରହ୍ମ ଇତ୍ୟାଦି ଶ୍ରୁତିବାକ୍ୟ

ପରମାତ୍ମାଙ୍କ ସହିତ ଜୀବର ଅଭେଦ ସମ୍ବନ୍ଧକୁ ସ୍ଥାପିତ କରୁଅଛି । ଏବଂ "ଦାଶ (କୈବର୍ତ୍ତ) ବ୍ରହ୍ମ" "ଦାସ ବ୍ରହ୍ମ" "ଧୂର୍ତ୍ତିଲୋକ ମଧ୍ୟ ବ୍ରହ୍ମ", ଇତ୍ୟାଦି ବାକ୍ୟଦ୍ୱାରା ଅଥର୍ବବେଦର ଏକ ଶାଖୀ ବ୍ରହ୍ମକୁ ଦାସକିତବାଦି ହେବା ବର୍ଣ୍ଣିତ କରାଛନ୍ତି ।"

ଏ ତଥ୍ୟକୁ ଯେଉଁ ଦୁଇଟି ସୂତ୍ର ଅଛି ତାହା ମଧ୍ୟ ଏହାଙ୍କୁ ପ୍ରମାଣ କରୁଛି ।

"ମନ୍ତ୍ରବର୍ଣ୍ଣାଚ୍ଚ" । ୨ୟ ଅ, ୩ୟ ପା, ୪୩ଶ ସୂତ୍ର—ଶ୍ରୀନିମ୍ବାର୍କ ଏ ସମ୍ବନ୍ଧରେ ଲେଖିଛନ୍ତି—"ପାଦୋଽସ୍ୟ ବିଶ୍ୱାଭୂତାନି" ମନ୍ତ୍ର-ବର୍ଣ୍ଣା ଜୀବୋ ବ୍ରହ୍ମାଂଶଃ ।

ଅର୍ଥାତ୍ "ଏହି ଅନନ୍ତମସ୍ତକ ପୁରୁଷର ଏକ ପାଦ (ଅଂଶ) ମାତ୍ର, ଏହା ବିଶ୍ୱ ଏବଂ ଭୂତଗ୍ରାମ ଅଟେ ।" ଏହି ଶ୍ରୁତିମନ୍ତ୍ର ଦ୍ୱାରା ଜୀବ ପରମାତ୍ମାର ଅଂଶ, ଏହା ପ୍ରତିପନ୍ନ ହେଉଅଛି ।"

"ଅପି ଚ ସ୍ମର୍ଯ୍ୟତେ"—୨ୟ ଅ, ୩ୟ ପା, ୪୪ଶସୂ, ଶ୍ରୀନିମ୍ବାର୍କ ଭାଷ୍ୟ—"ମମୈବାଂଶୋ ଜୀବଲୋକେ ଜୀବଭୂତଃ ସନାତନଃ" ଇତି ଜୀବସ୍ୟ ବ୍ରହ୍ମାଂଶତ୍ୱଂ ସ୍ମର୍ଯ୍ୟତେ ।"

ଅର୍ଥ—ସ୍ମୃତିରେ ମଧ୍ୟ ଏପରିକି କୁହାଯାଇଛି । ସ୍ମୃତି ଯଥା—"ମମୈବାଂଶୋ ଜୀବଲୋକେ ଜୀବଭୂତଃ ସନାତନଃ"

ଏହି ସବୁ ବାକ୍ୟରୁ ଜଣାଯାଉଅଛି ଯେ ବ୍ରହ୍ମସୂତ୍ରରେ ଜୀବ ବ୍ରହ୍ମଠାରୁ ଭିନ୍ନ ଓ ଅଭିନ୍ନ ସମ୍ବନ୍ଧରେ ଯେଉଁ ସବୁ ସୂତ୍ର ଅଛି ତାହାର ମୁଖ୍ୟାର୍ଥ ଗ୍ରହଣ କରିବାକୁ ସୂତ୍ରକାରଙ୍କ ଉଦ୍ଦେଶ୍ୟ । ଅଂଶ ସର୍ବାବସ୍ଥାରେ ଅଂଶୀଠାରୁ ଅଭିନ୍ନ । କାରଣ ଅଂଶୀଠାରୁ ଭିନ୍ନ କୌଣସି ବସ୍ତୁ ଅଂଶ ଭିତରେ ରହିବ ତାହାହେଲେ ତାକୁ ଅଂଶୀର ଅଂଶ କୁହାଯାଇ ପାରିବ ନାହିଁ । ପୁଣି ଅଂଶୀ କରିବା ଦ୍ୱାରା ଅଂଶ

ବ୍ୟାପକ ପ୍ରତୀତ ହେଉଅଛି । ପୁଣି ଅଂଶଠାରୁ ଅଂଶୀ ଅଧିକ ହେବାହେତୁ ଏହା ଅଂଶୀଠାରୁ ଭିନ୍ନ । ଅତଏବ ଅଂଶ ଓ ଅଂଶୀ ଭିତରେ ଭେଦ ଓ ଅଭେଦ ଉଭୟ ସମ୍ବନ୍ଧ ବିଦ୍ୟମାନ ଅଛି ।

ଜୀବ ବ୍ରହ୍ମର ଅଂଶ ହେବାହେତୁ ଯେପରି ବ୍ରହ୍ମନିତ୍ୟ ସେହିପରି ଜୀବକୁ ମଧ୍ୟ ନିତ୍ୟ ବୋଲି କହିବାକୁ ହେବ । ସୂତ୍ରକାର ମଧ୍ୟ ଏହାହିଁ ଦେଖାଇଅଛନ୍ତି । ନିମ୍ନଲିଖିତ ସୂତ୍ର ଓ ତାର ଭାଷ୍ୟରୁ ଏହା ସ୍ପଷ୍ଟରୂପରେ ବୁଝାଯିବ ।

"ଚରାଚର ବ୍ୟପାଶ୍ରୟସ୍ତୁ ସ୍ୟାତଦ୍‌ବ୍ୟପଦେଶୋ ଭାକ୍ତସ୍ତଦ୍‌ଭାବ ଭାବିତ୍ୱାତ୍" ୨ୟ ଅ, ୩ପା, ୧୬ଶ ସୂତ୍ର ।

ଶ୍ରୀନିମ୍ବାର୍କଭାଷ୍ୟ—ଜୀବାତ୍ମା ଜନ୍ମତେ; "ଦେବଦତ୍ତୋ ଜାତୋ-ମୃତଃ ।" ଇତି ବ୍ୟପଦେଶୋ ଗୌଣୋସ୍ତି । ଯତଃ ଚରାଚର ବ୍ୟପାଶ୍ରୟଃ । ଶରୀର ଭାବେ ଜନ୍ମ ମରଣୟୋର୍ଭାବିତ୍ୱାତ୍ ।

ଅର୍ଥ—ଜୀବାତ୍ମାର ସ୍ୱରୂପ ନିର୍ଣ୍ଣୟ କରାଯାଉଛି—"ଦେବଦତ୍ତ ଜନ୍ମ ଗ୍ରହଣ କଲା ଅଥବା ଏହାର ମୃତ୍ୟୁହେଲା" ଏଥିରେ ଜନ୍ମ ଓ ମରଣ ଶବ୍ଦ ଔପଚାରିକ (ଜୀବ ସମ୍ବନ୍ଧରେ ଗୌଣ ଅର୍ଥରେ କେବଳ ବ୍ୟବହୃତ ହୋଇଛି) ଅଟେ । କାରଣ ଏହି "ଜନ୍ମ ଓ ମୃତ୍ୟୁ" ଶବ୍ଦ ସମସ୍ତ ଚର ଓ ଅଚର ଦେହର ଭାବାଭାବ ପ୍ରତିଲକ୍ଷ୍ୟ କରି ବ୍ୟବହୃତ ହୋଇଛି । ଦେହର ସଂଯୋଗରେ କେବଳ ଜନ୍ମ ଓ ମରଣ ହୁଏ ।

"ନାତ୍ମାଽଶ୍ରୁତେ ନିତ୍ୟତ୍ୱାଚ୍ଚ ତାଭ୍ୟଃ ।" ୨ୟ ଅ, ୩ୟ, ୧୭ଶ ସୂତ୍ର । ଶ୍ରୀନିମ୍ବାର୍କ ଭାଷ୍ୟ—ଜୀବାତ୍ମା ନୋତ୍ପଦ୍ୟତେ କୁତଃ ? ସ୍ୱରୂପତସ୍ତୁ ତୁତ୍ପତ୍ତି ବଚନାଭାବାତ୍ । "ନଜାୟତେ ମ୍ରିୟତେ ବା ବିପଶ୍ଚିତ" "ନିତ୍ୟୋ ନିତ୍ୟାନାମ୍" "ଅଜୋ ହ୍ୟେକୋ ଜୁଷମାଣୋଽନୁଶେତେ "ଇତ୍ୟାଦି ଶ୍ରୁତିଭ୍ୟୋ ଜୀବସ୍ୟ ନିତ୍ୟତ୍ୱାବଗମାଚ୍ଚ ।

ଅର୍ଥ—ଜୀବାତ୍ମାର ଉତ୍ପତ୍ତି ନାହିଁ । କାରଣ ଶ୍ରୁତି ଏହାର ସ୍ୱରୂପତଃ ଉତ୍ପତ୍ତି କହୁ ନାହିଁ । ଏବଂ "ନ ଜାୟତେ ମ୍ରିୟତେ ବା" ଇତ୍ୟାଦି ଶ୍ରୁତିବାକ୍ୟଦ୍ୱାରା ଆତ୍ମାର ନିତ୍ୟତ୍ୱ ଓ ଅଜତ୍ୱ ବର୍ଣ୍ଣିତ ହୋଇଛି ।

ଉପରେ ଉଦ୍ଧାର କରାଯାଇଥିବା ସୂତ୍ରମାନଙ୍କରେ ଜୀବକୁ ବ୍ରହ୍ମର ଶକ୍ତି ରୂପ ଅଂଶ ବୋଲି ବର୍ଣ୍ଣନା କରାଯାଇଛି । ଏହି ଶକ୍ତି ବିଷୟ ତାହା ନିମ୍ନରେ କୁହାଗଲା ।

"ଜ୍ଞୋଽତଏବ" ୨ୟ ଅ, ୩ୟ ପା, ୧୮ଶ ସୂତ୍ର—ଶ୍ରୀନିମ୍ବାର୍କ-ଭାଷ୍ୟ—ଅହମର୍ଥଭୂତ ଆତ୍ମାଜ୍ଞାତା ଭବତି—

ଅର୍ଥ—ଶ୍ରୁତି ଦ୍ୱାରା ଏହା ପ୍ରତିପନ୍ନ ହେଉଛି ଯେ, "ଅହମ୍" ପଦର ଅର୍ଥଭୂତ ଜୀବାତ୍ମା ନିତ୍ୟ "ଜ୍ଞ" ଅର୍ଥାତ୍ ଚୈତନ୍ୟ ସ୍ୱରୂପ ଜ୍ଞାତା ଅଟେ ।

ଜୀବର ଜ୍ଞାତୃତ୍ୱବିଷୟ, ନିତ୍ୟ ତଥା ବ୍ରହ୍ମର ଶକ୍ତିରୂପ ଅଂଶ ବୋଲି ପୂର୍ବେ କୁହାଯାଇଛି ।" ପରନ୍ତୁ ବ୍ରହ୍ମ ସମ୍ବନ୍ଧରେ ଶ୍ରୁତି କହୁଛି—"ପରାସ୍ୟ ଶକ୍ତିର୍ବିଧୈବ ଶ୍ରୂୟତେ" ଅର୍ଥାତ୍ ବ୍ରହ୍ମର ପରାଶକ୍ତିରେ ଅନନ୍ତ ପ୍ରକାର ଭେଦ ଅଛି । ସୁତରାଂ ଜୀବ ମଧ୍ୟ ଅସଂଖ୍ୟ ଓ ଏହାର ଭେଦ ମଧ୍ୟ ଅସଂଖ୍ୟ । ଏହି ସବୁ ବିଭିନ୍ନ ଶକ୍ତିରେ ସମନ୍ୱିତ ହୋଇ ବ୍ରହ୍ମ ବିଭିନ୍ନ ଜୀବରୂପରେ ପ୍ରତିଭାତ ହୁଏ । ପରନ୍ତୁ ଏସବୁ ଶକ୍ତିର ଅଣସ୍ୱରୂପରେ ବ୍ରହ୍ମର ଯେ ସ୍ଥିତି, ଏହି ଅଣସ୍ୱରୂପରେ ଏହାର କୌଣସି ଭେଦ ନାହିଁ । ଏହି ଅଣସ୍ୱମାନ ଭାବରେ ବ୍ରହ୍ମ ସର୍ବଦା ଅଖଣ୍ଡ, କଳାରହିତ, ଅପରିବର୍ତ୍ତନୀୟ ରୂପରେ ରହୁଛି । ଏହା ସମସ୍ତଙ୍କ ଜୀବଶକ୍ତିର ଆତ୍ମାସ୍ୱରୂପ (ଅଣସ୍ୱ) । ଏହାର ଏକ ଅପରିବର୍ତ୍ତନୀୟ ଅଣସ୍ୱରେ ବର୍ତ୍ତମାନ ରହି ସର୍ବପ୍ରକାର ଶକ୍ତି ପ୍ରକାଶିତ ହେଉଛି ।"
( ଭେଦାଭେଦ ସିଦ୍ଧାନ୍ତରୁ ପୃ୧୩ )

ଜୀବ ବ୍ରହ୍ମର ଅଂଶ ହେବାରୁ ବ୍ରହ୍ମ ବ୍ୟାପକ, ଜୀବ ଏହାର ବ୍ୟାପ୍ତ ହେଲା । ବ୍ରହ୍ମ ସ୍ୱୀୟ ସ୍ୱରୂପରେ ଅନନ୍ତ ଜୀବଙ୍କୁ ଧାରଣ କରିଅଛନ୍ତି । ସେହିହେତୁ ବ୍ରହ୍ମ ସ୍ୱରୂପରେ ବଡ଼—ସର୍ବବ୍ୟାପୀ ଏବଂ ଜୀବଠାରୁ ସେ ଅଧିକ । ଏ ସମ୍ବନ୍ଧରେ ଭଗବାନ୍ ବେଦବ୍ୟାସଙ୍କ ବ୍ରହ୍ମସୂତ୍ରର କେତେକ ବାକ୍ୟ ନିମ୍ନରେ ଦିଆଗଲା ।

"ଅଧିକନ୍ତୁ ଭେଦ ନିର୍ଦ୍ଦେଶାତ୍" ୨ୟ ଅ, ୧ମପା, ୨୧ଶ ସୂ, ଶ୍ରୀନିମ୍ବାର୍କ ଭାଷ୍ୟ—ତତ୍ର ପରିହାରଃ । ସୁଖ ଦୁଃଖ ଭୋକ୍ତୃଃ ଶାରୀରାଦଧିକ ମୁକ୍ତଲକ୍ଷଣଂ ବ୍ରହ୍ମ ଜଗତ୍କର୍ତ୍ତୃ ବ୍ରୂମଃ । "ଆତ୍ମାନମନ୍ତରୋ ଯମୟତି" ଇତି ଭେଦବ୍ୟପଦେଶାତ୍ ତୟୋରତ୍ୟନ୍ତାଭେଦାଽସ୍ତି ଯତୋ ହିତାକରଣାଦି ଦୋଷ ପ୍ରସକ୍ତିଃ ସ୍ୟାତ୍ ।

ଅର୍ଥ—ଆପତ୍ତିର ଉତ୍ତର—ସୁଖ ଦୁଃଖାଦି ଭୋକ୍ତାଜୀବଠାରୁ ଉତ୍କୃଷ୍ଟ ଯେଉଁ ବ୍ରହ୍ମ, ସେ ଜଗତ୍କର୍ତ୍ତା । ଏହା ଆମ୍ଭେମାନେ ମାନୁଁ । ଶ୍ରୁତିରେ ମଧ୍ୟ "ଆତ୍ମାନୋ ମନ୍ତରୋ ଯମୟତି (ଭିତରେ ରହି ଯେ ଜୀବକୁ ପରିଚାଳିତ କରୁଛନ୍ତି) ଇତ୍ୟାଦି ବାକ୍ୟଦ୍ୱାରା ନିୟମ୍ୟ ଜୀବ ଓ ନିୟନ୍ତା ବ୍ରହ୍ମ ଉଭୟରେ ଭେଦ ରହିବା ବିଷୟ ସମର୍ଥନ କରି ମଧ୍ୟ ଏ ଦୁହିଁଙ୍କ ଭିତରେ ଅତ୍ୟନ୍ତ ଅଭେଦ ନିବାରିତ ହେଲା । ଅତଏବ ବ୍ରହ୍ମ ଜୀବଠାରୁ ଅଧିକ ( ଅର୍ଥାତ୍ ଶ୍ରେଷ୍ଠ) ଅଟେ । ସୁତରାଂ ( ବ୍ରହ୍ମଙ୍କୁ ଜନ୍ମମରଣାଦି କ୍ଲେଶ ନାହିଁ ) ବ୍ରହ୍ମରେ ହିତାକରଣ—ରୂପ ଦୋଷ ସ୍ଥାପିତ ହେଉନାହିଁ ।

"ଅଶ୍ମାଦିବଚ୍ଚ ତଦନୁପପତ୍ତିଃ ।" ୨ୟ ଅ, ୧ମପା, ୨୨ଶ ସୂ, ଶ୍ରୀନିମ୍ବାର୍କ ଭାଷ୍ୟ—ଭୂ-ବିକାର ବଜ୍ର ବୈଦୁର୍ଯ୍ୟାଦି ବଦ୍ ବ୍ରହ୍ମାଭିନ୍ନୋଽପି କ୍ଷେତ୍ରଜ୍ଞଃ ସ୍ୱସ୍ୱରୂପତୋ ଭିନ୍ନ ଏବାତଃ ପରୋକ୍ତ-ସ୍ୟାନୁପପତ୍ତିଃ ।

ଅର୍ଥ—ଦ୍ରବ୍ୟକର୍ମ ଦୁର୍ଯ୍ୟାଦି ପୃଥିବୀର ବିକାର ଯେପରି ବସ୍ତୁତଃ ପୃଥିବୀଠାରୁ ଅଭିନ୍ନ ହୋଇ ମଧ୍ୟ ନିଜ ବିକୃତ ରୂପରେ ପୃଥିବୀଠାରୁ ଭିନ୍ନ । ସେହିପରି ଜୀବ ମଧ୍ୟ ବାସ୍ତବରେ ବ୍ରହ୍ମଠାରୁ ଅଭିନ୍ନ ହୋଇ ନିଜ ନାମାଦି ବିଶିଷ୍ଟ ରୂପରେ ବ୍ରହ୍ମଠାରୁ ଭିନ୍ନ । ଏହିହେତୁ "କୃତାକରଣ" ପ୍ରଭୃତି ବିଷୟକ ଆପତ୍ତି ସଙ୍ଗତ ନୁହେଁ ।

ଜୀବଠାରୁ ବ୍ରହ୍ମ ବ୍ୟାପକ ବସ୍ତୁ ହେବା ହେତୁ ଜୀବ ସର୍ବ-ବ୍ୟାପୀ ବସ୍ତୁ ନୁହେଁ । ଜୀବ ଦେହ ପରିମାଣ ଅଥବା ଅନ୍ୟ କୌଣସି ପରିମାଣରେ ଯୁକ୍ତ ନୁହେଁ । ବ୍ରହ୍ମସୂତ୍ରରେ ଏହା ସ୍ପଷ୍ଟ ଭାବରେ ଲେଖା ଅଛି । ଯଥା—"ଏବ ଚାତ୍ମାଽକାର୍ତ୍ସ୍ନ୍ୟମ୍" ୨ୟ ଅ: ୨ୟ: ୩୪ଶ ସୂ । ଶ୍ରୀନିମ୍ବାର୍କଭାଷ୍ୟ—"ଏବ ଶରୀର ପରିମାଣତ୍ୱେ ଜୀବାଙ୍ଗି କୃତସ୍ୟାତ୍ମନୋ ବୃହଦ୍ଦେହ ପ୍ରାପ୍ତାବପୂର୍ଣ୍ଣତା ସ୍ୟାତ୍ ।

ଅର୍ଥ—ଆତ୍ମା ଶରୀର ପରିମାଣ ହେବାରୁ କ୍ଷୁଦ୍ରକାୟବିଶିଷ୍ଟ ( ପିପୀଳିକାଦି ) ଜୀବ, ଦେହାନ୍ତ ହେବାପରେ କର୍ମବଶରୁ ବୃହତ୍ ( ଗଜ ) ଶରୀରାଦି ପାଇବାରୁ ଅକୃତ୍ସ୍ନ ( ଅବ୍ୟାପି, କ୍ଷୁଦ୍ର ) ହୋଇଯାଏ ।

ଜଗତ:—ବେଦାନ୍ତ ଦର୍ଶନରେ ଜୀବନକୁ ଯେପରି ବ୍ରହ୍ମର ଅଂଶ ବୋଲି କୁହାଯାଇଛି, ଜଗତ୍‌କୁ ମଧ୍ୟ ସେହିପରି ବ୍ରହ୍ମର ଅଂଶ ବୋଲି କୁହାଯାଇଛି ।

"ଉଭୟ ବ୍ୟପଦେଶାତ୍ତ୍ୱହି କୁଣ୍ଡଳବତ୍" ୩ୟ: ୨ୟ: ପା: ୨୭ ସୂତ୍ର । ଶ୍ରୀ ନିମ୍ବାର୍କ ଭାଷ୍ୟ—ମୂର୍ତ୍ତା ମୂର୍ତ୍ତିସ୍ୟା ପ୍ରଭୃତ୍ୟେଧତ୍ୱଂ ଭୂତସୂକ୍ଷ୍ମ ମୂର୍ତ୍ତି ମୂର୍ତ୍ତ୍ୟାଦିକଂ ବିଶ୍ୱଂ ସ୍ୱକାରଣେ ଭିନ୍ନାଭିନ୍ନ ସମ୍ବନ୍ଧେନ ସ୍ଥାତୁ ମର୍ହତି ଭେଦାଭେଦ ବ୍ୟପଦେଶାଦହି କୁଣ୍ଡଳବତ୍ ।"

ଅର୍ଥ—ବ୍ରହ୍ମର ମୂର୍ତ୍ତିତ୍ୱ ଓ ଅମୂର୍ତ୍ତିତ୍ୱକୁ ଅଧିକଭାବରେ ଭୂତ କରିବାପାଇଁ ସୂତ୍ରକାର କହୁଅଛନ୍ତି—ସ୍ଥୂଳ ଓ ସୂକ୍ଷ୍ମ ବିଶ୍ୱ ସ୍ୱକାରଣ

ବ୍ରହ୍ମ ସହିତରେ ଭିନ୍ନ ଭିନ୍ନ ସମ୍ବନ୍ଧରେ ଅବସ୍ଥିତ । କାରଣ ବ୍ରହ୍ମ ସହିତ ଭେଦ ସମ୍ବନ୍ଧ ଓ ଅଭେଦ ସମ୍ବନ୍ଧ—ଏ ଉଭୟ ସମ୍ବନ୍ଧ ଶ୍ରୁତିରେ ପ୍ରକାଶିତ ହୋଇଛି । ଯେପରି ସର୍ପ କୁଣ୍ଡଳାକାରରେ ରହିବା-ବେଳେ ଏହାର ଅଙ୍ଗ ସମୂହ ଲୁଚି ରହୁଛି, ଓ ସିଧା ହୋଇଯିବା ପରେ ଫଣା ଲାଙ୍ଗୁଡ଼ ଆଦି ଅବୟବ ପ୍ରକଟ ହେଉଛି, ସେହିପରି ବ୍ରହ୍ମଠାରୁ ଜଗତ ପ୍ରକଟ ହେଉଛି ଏବଂ ପ୍ରଳୟ କାଳରେ ପୁନର୍ବାର ସେହି ବ୍ରହ୍ମରେ ଲୀନ ହୋଇଯାଉଛି ।

ଶ୍ରୀନିବାସ ଗୁରୁ ଏ ସୂତ୍ରର ଭାଷ୍ୟରେ କହୁଛନ୍ତି—ମୂର୍ତ୍ତାମୂର୍ତ୍ତାଦି ବହିଷ୍ଠାନୀୟ ଜଗତ (କାରଣ ବସ୍ତୁ) ବ୍ରହ୍ମଠାରୁ ଭିନ୍ନ ହୋଇ ମଧ୍ୟ, ଏହାଠାରୁ ଅଭିନ୍ନ । କାରଣ ଶ୍ରୁତିରେ ବ୍ରହ୍ମଠାରୁ ଭିନ୍ନ ଓ ଅଭିନ୍ନ ଏ ଉଭୟ ସମ୍ବନ୍ଧରେ ଉପଦେଶ ପ୍ରକାଶିତ ହୋଇଛି । "ଯତୋବା ଇମାନି ଭୂତାନି ଜାୟନ୍ତେ" ( ଯାହାଠାରୁ ଏହି ସବୁ ଭୂତ ଉତ୍ପନ୍ନ ହୋଇଛି ) "ଯଃ ପୃଥିବ୍ୟାଂ ତିଷ୍ଠନ୍" (ଯାହା ପୃଥିବୀରେ ବର୍ତ୍ତମାନ ରହି ) ଇତ୍ୟାଦି ବାକ୍ୟଦ୍ୱାରା ଶ୍ରୁତିରେ ବ୍ରହ୍ମଠାରୁ ଜଗତକୁ ଭିନ୍ନ ବୋଲି କୁହାଗଲା । "ସର୍ବଂ ଖଲ୍ୱିଦଂ ବ୍ରହ୍ମ" "ଏହି ସମଗ୍ର ସଂସାର ବ୍ରହ୍ମ" ଆଦି ବାକ୍ୟଦ୍ୱାରା ଶ୍ରୁତିରେ ବ୍ରହ୍ମଠାରୁ ଜଗତର ଅଭେଦ ମଧ୍ୟ କୁହା ଯାଇଛି । ଏହି ବିଷୟରେ ଦୃଷ୍ଟାନ୍ତ ଦେବାକୁ ଯାଇ ସୂତ୍ରକାର କହୁଛନ୍ତି, ଏହା ସର୍ପକୁଣ୍ଡଳାକାର ଧାରଣ କରିବା ପରି । ଦୃଷ୍ଟାନ୍ତ ସ୍ଥଳରେ ସର୍ବତ୍ର ଏହି ନିୟମ ଯେ, ଯେଉଁ ଅଂଶ ସହିତ ସମାନତା ଦେଖାଇ ଦିଆଯାଏ ସେହି ଅଂଶକୁ ଗ୍ରହଣ କରିବାକୁ ହୁଏ । ସର୍ପର ଲମ୍ବମାନ ରଜ୍ଜୁର ଆକାର କେବଳ ଏହାର କୁଣ୍ଡଳ-କାରର ଉପାଦାନ । ଅତଏବ ଏହାର କାରଣ, ଏହି ଲମ୍ବମାନ ସର୍ପସ୍ଥାନୀୟ ସର୍ବଶକ୍ତିମାନ୍ ବ୍ରହ୍ମଜଗତଠାରୁ ଅଭିନ୍ନ ଏବଂ ଏହାର ନିମିତ୍ତ ତଥା ଉପାଦାନ-କାରଣ ଅଟେ । କାର୍ଯ୍ୟଭୂତ ସର୍ପର

ଚନ୍ଦ୍ରାକାର କୁଣ୍ଡଳରୂପ ସାମାନ୍ୟ କାର୍ଯ୍ୟଭୂତ ମୂର୍ତ୍ତାମୂର୍ତ୍ତ ( ସ୍ଥୂଳ ତଥା ସୂକ୍ଷ୍ମ ) ବସ୍ତୁ ଅଟେ । ଏଥିରେ କୁଣ୍ଡଳାକାର ଅସ୍ୱତନ୍ତ୍ର, ସ୍ୱୟଂ ସର୍ପ କାର୍ଯ୍ୟ ଅଟେ, ସର୍ପ ଏହାଠାରୁ ସ୍ୱତନ୍ତ୍ର, ସ୍ୱୟଂ ସର୍ପ ହିଁ କାରଣ ଅଟେ । ଅତଏବ ଏ ଦୁହିଁଙ୍କ ଭିତରେ ଭେଦ ସମ୍ବନ୍ଧ । ପରନ୍ତୁ ସର୍ପ ବିନା କୁଣ୍ଡଳାକାରର ସ୍ୱତନ୍ତ୍ରରୂପରେ ସ୍ଥିତି ନାହିଁ । ଅତଏବ ଏ ଦୁଇ ଭିତରେ ଅଭେଦ ସମ୍ବନ୍ଧ । ଏହି ସ୍ୱନ ଅନ୍ୟରୂପ ଅନ୍ୟାନ୍ୟ ଶ୍ରୁତି ବାକ୍ୟ ମଧ୍ୟ ଅଛି । ଯଥା—"ଦ୍ୱା ସୁପର୍ଣ୍ଣା ସଯୁଜା" (ଦୁଇ ପକ୍ଷୀ ଯୁକ୍ତ ଭାବରେ) "ପୃଥଗାତ୍ମାନଂ ପ୍ରେରିତାରଂଚ ମତ୍ୱା" (ଅତ୍ମା ଓ ପରିଚାଳକ ବ୍ରହ୍ମଙ୍କୁ ଭିନ୍ନ ବୁଝି ) ।

"ସର୍ବଂ ଖଳ୍ୱିଦଂ ବ୍ରହ୍ମ" (ଏହା ସବୁ ବ୍ରହ୍ମ) ।
"ଏତଦାତ୍ମ୍ୟମିଦଂ ସର୍ବଂ" (ଏହାସବୁ ବ୍ରହ୍ମାତ୍ମକ) ।
"ବ୍ରହ୍ମୈବେଦଂ ସର୍ବଂ" (ବ୍ରହ୍ମହିଁ ଏହାସବୁ) ।
"ଅତ୍ମୈବେଦଂ ସର୍ବଂ" (ଆତ୍ମାହିଁ ଏହାସବୁ) ।

ଇତ୍ୟାଦି ମୂର୍ତ୍ତାମୂର୍ତ୍ତ ପଦାର୍ଥଙ୍କର ବ୍ରହ୍ମାତ୍ମକ ହେବା ହେତୁ ଏହାର ପ୍ରତିଷେଧ ନାହିଁ (ଅର୍ଥାତ୍ ଏହା ମିଥ୍ୟା ନୁହେଁ) ।

ବ୍ରହ୍ମ ଓ ଜଗତ୍ ଭିତରେ ଭେଦାଭେଦ ସମ୍ବନ୍ଧ ଥିବାରୁ ଏ ଦୁହିଁଙ୍କ ଭିତରେ ଅଂଶାଂଶୀ ସମ୍ବନ୍ଧ ମଧ୍ୟ ଅଛି । ଜଗତ୍ ବ୍ରହ୍ମର ଅଂଶ ହେବାରୁ ଏହା ମଧ୍ୟ ନିତ୍ୟ ଓ ସତ୍ୟ । ଏହା ସତ୍ତ୍ୱେ ଏହା ପରିବର୍ତ୍ତନ ଶୀଳ । ବ୍ରହ୍ମ ସର୍ବଜ୍ଞ । ଭୂତ ଭବିଷ୍ୟ ବର୍ତ୍ତମାନ ରୂପରେ ପ୍ରକାଶିତ ଜଗତ୍ ଏହାର ଜ୍ଞାନରେ ନିତ୍ୟରୂପରେ ପ୍ରତିଷ୍ଠିତ । ଜୀବ-ଜ୍ଞାନରେ ଜଗତ କ୍ରମଭାବରେ ପ୍ରକାଶିତ ହେଉଛି । ସେହିହେତୁ ଜୀବ ଏହାକୁ ପରିବର୍ତ୍ତନଶୀଳ ବୋଲି ବୁଝୁଛି । କିନ୍ତୁ ବ୍ରହ୍ମ-ଜ୍ଞାନରେ ଏହା ନିତ୍ୟ ।

ବ୍ରହ୍ମ:—ବେଦାନ୍ତ ଦର୍ଶନର ପ୍ରଥମ ସୂତ୍ରରେ "ବ୍ରହ୍ମ କଣ ?" ବୋଲି ପ୍ରଶ୍ନ କରାଯାଇଛି । ମହର୍ଷି ବେଦବ୍ୟାସ ତାର ଉତ୍ତର

୨ୟ ସୂତ୍ରରେ ପ୍ରଥମେ ଦେଇଛନ୍ତି । ଯାହାରେ କୁହାଯାଉଛି ଯେ, ଜଗତର ଉତ୍ପତ୍ତି, ସ୍ଥିତି ଓ ଲୟର [illegible] ବ୍ରହ୍ମ । "ଜନ୍ମାଦ୍ୟସ୍ୟ ଯତଃ" ୧ମ ଅ: ୧ମ ପା: ୨ୟ ସୂତ୍ର ।

ଶ୍ରୀନିମ୍ବାର୍କଭାଷ୍ୟ—ତଲ୍ଲକ୍ଷଣଂ ଜିଜ୍ଞାସ୍ୟଂ ସିଦ୍ଧାନ୍ତମାହ—ଅସ୍ୟାଽଚିନ୍ତ୍ୟ-ରଚନ ସଂସ୍ଥାନ ସମ୍ପନ୍ନସ୍ୟ ସଂକ୍ଷେପାସ୍ତୁ ନାମରୂପାଦ ବିଶେଷାଶ୍ରୟସ୍ୟାଚିନ୍ତ୍ୟ—ରଚସ୍ୟ ବିଶ୍ୱସ୍ୟ ସୃଷ୍ଟି ସ୍ଥିତି ଲୟ । ଯସ୍ମାତ୍ ସର୍ବଜ୍ଞାଦନନ୍ତଗୁଣାଶ୍ରୟାଦ ବ୍ରହ୍ମେଶ କାଳାଦିୟନ୍ତୁର୍ଭଗବତୋ ଭବନ୍ତି । ତଦେବ ପୂର୍ବୋକ୍ତ ନିର୍ବାଚନ ବିଷୟଂ ବ୍ରହ୍ମେତି ଲକ୍ଷଣବାକ୍ୟାର୍ଥଃ ।

ଅର୍ଥ—ଜିଜ୍ଞାସିତ ବ୍ରହ୍ମର ଲକ୍ଷଣ ସମ୍ବନ୍ଧରେ ସୂତ୍ରକାର କହୁଛନ୍ତି ପାରଂପରିକ ସମ୍ବନ୍ଧଯୁକ୍ତ ଅନନ୍ତ ଅଙ୍ଗ ବିଶିଷ୍ଟ ଅନନ୍ତ ନାମ ଓ ରୂପରେ ଯେ ପ୍ରକଟିତ ହୁଏ, ଏହି ଅଚିନ୍ତ୍ୟ ରଚନା ବିଶ୍ୱର ସୃଷ୍ଟି ସ୍ଥିତି ଓ ଲୟର କର୍ତ୍ତା, ସର୍ବଜ୍ଞ ଏବଂ ଅନନ୍ତଗୁଣର ଆଶ୍ରୟ, ବ୍ରହ୍ମା, ମହେଶ୍ୱର ଓ କାଳାଦିର ନିୟନ୍ତା କେବଳ ସେହି ଜିଜ୍ଞାସିତ ବ୍ରହ୍ମ । ଏହିପରି ଏହି ସୂତ୍ର ଦ୍ୱାରା ଜିଜ୍ଞାସିତ ବ୍ରହ୍ମର ଲକ୍ଷଣ ନିର୍ଦ୍ଧାରିତ ହେଲା ।

"ଶାସ୍ତ୍ରଯୋନିତ୍ୱାତ୍" ୧ମ ଅ: ୧ମ ପା: ୩ୟ ସୂତ୍ର—ଏ ସୂତ୍ରର ଭାଷ୍ୟ ନିମ୍ବାର୍କସ୍ୱାମୀ ଏପରି କହୁଛନ୍ତି—ବର୍ତ୍ତମାନ ପ୍ରଶ୍ନ ହେଉଛି, ଏହି ବ୍ରହ୍ମ କିପରି ପ୍ରାମାଣିକ ଧରିଯିବ ? ଏହାର ଉତ୍ତରରେ ସୂତ୍ରକାର କହୁଛନ୍ତି—ଶାସ୍ତ୍ର କେବଳ ଉପର୍ଯ୍ୟୁକ୍ତ ଲକ୍ଷଣ-ନିରୂପିତ ବ୍ରହ୍ମର ଯୋନି ଅର୍ଥାତ୍ ଏହାର ଜ୍ଞାପକ (ଏହା ସମ୍ବନ୍ଧରେ ଶାସ୍ତ୍ର କେବଳ ଏକମାତ୍ର ପ୍ରମାଣ) ପୂର୍ବୋକ୍ତ ଲକ୍ଷଣଯୁକ୍ତ ହେବାଦ୍ୱାରା ଶାସ୍ତ୍ରରେ ଅଭିଧେୟ ବସ୍ତୁ ବ୍ରହ୍ମ ଶବ୍ଦଦ୍ୱାରା ନିର୍ଦ୍ଦିଷ୍ଟ କରାଗଲା । ଅର୍ଥାତ୍ ଜଗତର ସୃଷ୍ଟି ସ୍ଥିତି ଲୟର ଏକମାତ୍ର କାରଣ, ସର୍ବଜ୍ଞ, ସର୍ବଶକ୍ତିମାନ, ପଦାର୍ଥହିଁ ବ୍ରହ୍ମ, ଏହା ଶାସ୍ତ୍ର ପ୍ରମାଣ ଦ୍ୱାରା ବୁଝା ଯାଉଛି) ।

ତତ୍ତୁ ସମନ୍ୱୟାତ୍—୧ମ ଅ, ୨ୟ ପା, ୪ର୍ଥ ସୂତ୍ର ।

ଶ୍ରୀନିମ୍ବାର୍କଙ୍କ ସୂତ୍ରାର୍ଥ ଭାଷ୍ୟ ଏତ୍ସପର:—ବ୍ରହ୍ମତ୍ୱଂ ଜିଜ୍ଞାସ୍ୟ ତସ୍ୟ କାରଣ । ଶାସ୍ତ୍ର ଏହାକୁ ସିଦ୍ଧ କରୁଛି । କାରଣ ମୁଖ୍ୟ ପ୍ରତିପାଦ୍ୟ ବିଷୟ ରୂପରେ ବ୍ରହ୍ମରେ କେବଳ ମୁଖ୍ୟ ବୃତ୍ତି ଦ୍ୱାରା ସମସ୍ତ ବେଦବାକ୍ୟର ଅନ୍ୱୟ ହୋଇଛି । ବ୍ରହ୍ମ ପ୍ରତିପାଦକ ବୋଲି ସବୁ ବେଦବାକ୍ୟରେ ବ୍ରହ୍ମର କେବଳ ସମନ୍ୱୟ ହୁଏ । ଗ୍ରନ୍ଥ ଆରମ୍ଭରେ ଜିଜ୍ଞାସାର ବିଷୟ ବୋଲି ଯେଉଁ ବ୍ରହ୍ମର ଉଲ୍ଲେଖ ହୋଇଛି, ସେ ବ୍ରହ୍ମ ସର୍ବଜ୍ଞ, ସେ ଅଚିନ୍ତ୍ୟ ଶକ୍ତିର ବିଶ୍ୱର ସୃଷ୍ଟି ସ୍ଥିତି ଲୟର କାରଣ ହେତୁ, ସେ କେବଳ ବେଦ ପ୍ରମାଣଗମ୍ୟ । ସେ ସମଗ୍ର ବିଶ୍ୱଠାରୁ ଭିନ୍ନ ଏବଂ ଅଭିନ୍ନ ମଧ୍ୟ । ସେ କେବଳ ସର୍ବବିଧ ଐଶ୍ୱର୍ଯ୍ୟପୂର୍ଣ୍ଣ ବିଶ୍ୱାତ୍ମା ବାସୁଦେବ ।

ବ୍ରହ୍ମ ଜଗତର ଉପାଦାନ କାରଣ ଓ ନିମିତ୍ତ କାରଣ ମଧ୍ୟ । ୧ମ ଅ, ୪ର୍ଥ ପାଦ ୨୩ଶ ସୂତ୍ରରେ ଏହା ସ୍ପଷ୍ଟ ରୂପରେ ବ୍ୟକ୍ତ କରାଯାଇଛି ।

“ପ୍ରକୃତିଶ୍ଚ ପ୍ରତିଜ୍ଞା ଦୃଷ୍ଟାନ୍ତାନୁପରୋଧାତ୍” ।

ଶ୍ରୀନିମ୍ବାର୍କ ଭାଷ୍ୟର ଅର୍ଥ—ବ୍ରହ୍ମ ଜଗତର କେବଳ ପ୍ରକୃତି ଅର୍ଥାତ୍ ଉପାଦାନ କାରଣ ନୁହେଁ, ସେ ଜଗତର ନିମିତ୍ତ କାରଣ ମଧ୍ୟ । ଏହିଭଳି ସିଦ୍ଧାନ୍ତରେ କେବଳ ଶ୍ରୁତିର ପ୍ରତିଜ୍ଞା ଓ ଦୃଷ୍ଟାନ୍ତ ଉଭୟର ସାମଞ୍ଜସ୍ୟ ହୁଏ । ( ପ୍ରତିଜ୍ଞା ଯଥା—ଉତ ତମାଦେଶମପ୍ରାକ୍ଷ୍ୟୋ ଯେନାଶ୍ରୁତଂ ଶ୍ରୁତଂ ଭବତ୍ୟମତଂ ମତମବିଜ୍ଞାତଂ ବିଜ୍ଞାତଂ ଭବତି” ଦୃଷ୍ଟାନ୍ତ ଯଥା—ଯଥା ସୌମ୍ୟ ଏକେନ ମୃତ୍ପିଣ୍ଡେନ ସର୍ବଂ ମୃଣ୍ମୟଂ ବିଜ୍ଞାତଂ ସ୍ୟାତ୍ ।”

ଅଭିଧ୍ୟୋପଦେଶାଚ୍ଚ । ୧ମ ଅ ୪ର୍ଥ ପା, ୨୪ଶ ସୂତ୍ର ।

ଶ୍ରୀନିମ୍ବାର୍କଭାଷ୍ୟ— ତଦୈକ୍ଷତ ବହୁ ସ୍ୟାମ୍” ଇତ୍ୟାଦିନା ତଦୁପଦେଶାଚ୍ଚ ବ୍ରହ୍ମଣଃ ସ୍ରଷ୍ଟୃତ୍ୱ ପ୍ରକୃତିତ୍ୱେ ବର୍ତ୍ତେତେ ।”

ଅର୍ଥ—ବ୍ରହ୍ମ ନିଜେ ବହୁ ହେବେ, ଏହିପରି ଇଚ୍ଛା କରି ଥିଲେ, ଶ୍ରୁତି ଏହା ସ୍ପଷ୍ଟ ଭାବରେ ଉପଦେଶ ଦେଇଛନ୍ତି । ସେହି-ହେତୁ ବ୍ରହ୍ମ ଯେ ଜଗତର ନିମିତ୍ତ କାରଣ ଓ ପ୍ରକୃତି ( ଉପାଦାନ କାରଣ ) ଏହାହିଁ ସିଦ୍ଧାନ୍ତ ହେଉଛି ।

ସାକ୍ଷାଚ୍ଚୋଭୟାମ୍ନାନାତ୍ । ୧ମ ଅ, ୪ର୍ଥ ପା, ୨୫ଶ ସୂତ୍ର ।

ଶ୍ରୁତି ବ୍ରହ୍ମର ଉଭୟବିଧ କାରଣତ୍ୱ ସାକ୍ଷାତ୍ ସମ୍ବନ୍ଧରେ ଉପଦେଶ ଦେଇଛନ୍ତି । ଅତଏବ ସେ ସମ୍ବନ୍ଧରେ ଆଉ ସନ୍ଦେହ ରହି ନପାରେ ।

ଆତ୍ମକୃତେଃ ପରିଣାମାତ୍ । ୧ମ ଅ ୪ର୍ଥ ପା. ୨୬ ସୂତ୍ର ।

ବ୍ରହ୍ମହିଁ ଜଗତର ନିମିତ୍ତ ଓ ଉପାଦାନ କାରଣ ।

ଯୋନିଶ୍ଚହି ଗୀୟତେ । ୧ମ ଅ, ୪ର୍ଥ ପା, ୨୭ ସୂତ୍ର ।

ବ୍ରହ୍ମଙ୍କୁ ଶ୍ରୁତି ସମସ୍ତଙ୍କର ଯୋନି ବୋଲି ବର୍ଣ୍ଣନା କରି ଅଛି । ଏଥିରୁ ବ୍ରହ୍ମ ଯେ ଜଗତର ଉପାଦାନ କାରଣ, ଏହାହିଁ ସିଦ୍ଧାନ୍ତ ହେଉଛି ।

ଜୀବ ଓ ଜଗତ ବ୍ରହ୍ମଠାରୁ ଅଭିନ୍ନ ଓ ଭିନ୍ନ । ଏ ଦୁହେଁ ବ୍ରହ୍ମର ଶକ୍ତିରୂପ ଅଂଶ ମାତ୍ର । ଏ ଦୁହିଙ୍କୁ ଅତିକ୍ରମ କରି ମଧ୍ୟ ବ୍ରହ୍ମ ବର୍ତ୍ତମାନ । ଯେଉଁ ଶକ୍ତି ଦ୍ୱାରା ବ୍ରହ୍ମ ଜଗତ୍‌ରୂପରେ ନିଜକୁ ପ୍ରକାଶିତ କରୁଛନ୍ତି ତାହା ହେଉଛି "ମାୟା" ଶକ୍ତି । ଏହା ବ୍ରହ୍ମର ଅଙ୍ଗୀଭୂତ ବା ଆତ୍ମଭୂତା ଶକ୍ତି । ଏହି "ମାୟାର" ନାମ "ପ୍ରକୃତି" । ଏହି ମାୟା ବା ପ୍ରକୃତି ତ୍ରିଗୁଣାତ୍ମିକା । ଜୀବର ବୁଦ୍ଧି, ଅହଂକାର, ମନ, ବାକ୍ୟ, ରୂପ ରସାଦି, ଇନ୍ଦ୍ରିୟାଦି ସବୁ ପ୍ରକୃତି ବା ମାୟା ଶକ୍ତିର ରୂପାନ୍ତର ମାତ୍ର ।

ବ୍ରହ୍ମ ଜଗତ ଓ ଜୀବ ରୂପରେ ପ୍ରକାଶିତ ହେଉ ଥିଲେ ମଧ୍ୟ ଏ ଦୁହିଁଙ୍କୁ ଅତିକ୍ରମ କରି ବିଦ୍ୟମାନ ଅଛି ଏହା ଶ୍ରୁତି ପ୍ରମାଣିତ କରୁଛି ।

ପ୍ରକୃତୈତାବତ୍ତ୍ୱଂ ହି ପ୍ରତିଷେଧତି ତତୋ ବ୍ରବୀତି ଚ ଭୂୟଃ ।
୩ୟ ଅ, ୨ୟ ପା, ୨୨ ସୂତ୍ର ।

ଶ୍ରୀନିମ୍ବାର୍କ ଭାଷ୍ୟର ସାର ମର୍ମ—ବୃହଦାରଣ୍ୟ କୋପନିଷଦର ୨ୟ ଅଧ୍ୟାୟର ୩ୟ ବ୍ରାହ୍ମଣରେ ଶ୍ରୁତି ପ୍ରଥମରେ କହୁଛନ୍ତି— "ଦ୍ୱେ ବାବ ବ୍ରହ୍ମଣୋ ରୂପେ ମୂର୍ତ୍ତଞ୍ଚୈବା ମୂର୍ତ୍ତଞ୍ଚ" ଇତ୍ୟାଦି ଅର୍ଥାତ୍ ବ୍ରହ୍ମର ଦୁଇ ପ୍ରକାର ରୂପ—ମୂର୍ତ୍ତି (ସ୍ଥୂଳ), ଅମୂର୍ତ୍ତ (ସୂକ୍ଷ୍ମ) ଇତ୍ୟାଦି । ଏପରି କହି କ୍ଷିତ୍ୟାଦି ସମସ୍ତ ଭୂତକୁ ମୂର୍ତ୍ତି ଓ ଆକାଶ ଓ ବାୟୁକୁ ଅମୂର୍ତ୍ତି ବୋଲି ବ୍ୟାଖ୍ୟା କରିଛନ୍ତି । ଏପରି ବର୍ଣ୍ଣନା କରି ପରେ କହୁଛନ୍ତି, "ଯୋଽୟଂ ଦକ୍ଷିଣେଽକ୍ଷନ୍ ପୁରୁଷସ୍ତସ୍ୟ ହ୍ୟେଷ ରସଃ" (ଦକ୍ଷିଣଚକ୍ଷୁରେ ଅବସ୍ଥିତ ଯେ ପୁରୁଷ ସେ ଏହି ଅମୂର୍ତ୍ତି ଆକାଶାଦିର ମଧ୍ୟ ସାର ) । "ନେତି ନେତି" (ସେ ଏହା ନୁହେଁ ) ଏହି ଯେ ଶ୍ରୁତି ବାକ୍ୟ ଅଛି, ତାହା ଦ୍ୱାରା ବ୍ରହ୍ମର ଯେଉଁ ମୂର୍ତ୍ତି ଓ ଅମୂର୍ତ୍ତିରୂପ ପ୍ରଥମେ କୁହାଯାଇଛି ତାହା ସମ୍ୟକ୍ ନିଷେଧ ହୋଇଅଛି । ଅଥବା ତାହାଦ୍ୱାରା ଏହି ସ୍ଥୂଳ ସୂକ୍ଷ୍ମ ରୂପ ମାତ୍ରତ୍ୱ ନିଷିଦ୍ଧ ହୋଇଅଛି । ( ଅର୍ଥାତ୍ ଏହି ସ୍ଥୂଳସୂକ୍ଷ୍ମ ରୂପ ତାହାର ଏକଦା ନାହିଁ, ଏହି କଥା ବୋଲି ହୋଇଛି, ଅଥବା ସେ କେବଳ ସେତିକି ନୁହେଁ, ଏହାର ଅତୀତ ମଧ୍ୟ, ଏହା ବୋଲି ହୋଇଛି ?) ଏହି ସନ୍ଦେହ ଦୂର କରିବା ପାଇଁ ସୂତ୍ରକାର କହୁଛନ୍ତି ଯେ ପୂର୍ବୋକ୍ତ ସ୍ଥୂଳସୂକ୍ଷ୍ମରୂପ ମାତ୍ରତ୍ୱ ନିଷିଦ୍ଧ ହୋଇଅଛି, ଏହିସବୁ ରୂପ ତାହାର ଏକଦା ନାହିଁ, ଶ୍ରୁତିର ଏପରି ଅଭିପ୍ରାୟ ନୁହେଁ, ସେ ଯେ ସେତିକି କେବଳେ ନୁହେଁ, ତାହାର ଅତୀତ ମଧ୍ୟ ଅଟେ, ତାହା ପ୍ରକାଶ କରିବାକୁ ପୂର୍ବୋକ୍ତ "ନେତି ନେତି" ବାକ୍ୟର ଅଭିପ୍ରାୟ । କାରଣ ଏହି "ନେତି ନେତି" ବାକ୍ୟ କହିବା ପରେ ଶ୍ରୁତି ପୁନର୍ବାର "ନହ୍ୟେତସ୍ମାଦିତି ନେତ୍ୟନ୍ୟତ୍ ପରମସ୍ତି" ( ଏହା-

ଠାରୁ ମଧ୍ୟ ଶ୍ରେଷ୍ଠ ଯେ ତାହାର ଅପର ରୂପ ନାହିଁ, ତାହା ନୁହେଁ, ଅପର ଶ୍ରେଷ୍ଠ ରୂପ ମଧ୍ୟ ଅଛି । ଏହି ବାକ୍ୟଦ୍ୱୟ ପୂର୍ବର "ନେତି ନେତି" ବାକ୍ୟର ଅର୍ଥ ଶ୍ରୁତି ପ୍ରକାଶ କରି ଦେଇ ଅଛନ୍ତି । ଅତଏବ ଉକ୍ତ ବାକ୍ୟ ଦ୍ୱୟ ଶ୍ରୁତି ବ୍ରହ୍ମର ଦ୍ୱିରୂପତାରହିଁ ସିଦ୍ଧାନ୍ତ କରିଅଛନ୍ତି ।

ପୁଣି "ତଦବ୍ୟକ୍ତମାହ ହି" । ୩ୟ ଅ, ୨ୟ ପା, ୨୩ ସୂତ୍ର ।

ଚକ୍ଷୁ ଅଥବା ବାକ୍ୟ ତାହାକୁ ଧାରଣ କରି ପାରିବ ନାହିଁ । ଇତ୍ୟାଦି ବାକ୍ୟରେ ବ୍ରହ୍ମକୁ ଅବ୍ୟକ୍ତ (ଇନ୍ଦ୍ରିୟାତୀତ) ବୋଲି ପ୍ରକାଶ କରି ଅଛନ୍ତି ।

ଭକ୍ତି ଦ୍ୱାରା ଏହି ବ୍ରହ୍ମଙ୍କୁ ଦର୍ଶନ କରି ହେବ ।

ଯଥା—ଅପି ସଂରାଧନେ ପ୍ରତ୍ୟକ୍ଷାନୁମାନାଭ୍ୟାଂ । ୩ୟ ଅ, ୨ୟ ପା, ୨୦ ସୂତ୍ର ।

ଶ୍ରୀନିମ୍ବାର୍କ ଭାଷ୍ୟର ଅର୍ଥ—ଭକ୍ତି ଯୋଗରେ ଅବଧାରିତ ହେଲେ ବ୍ରହ୍ମ ପ୍ରକାଶିତ ହୁଅନ୍ତି । ଶ୍ରୁତି ଓ ସ୍ମୃତି ଏହା ନିର୍ଦ୍ଦେଶ କରି ଅଛନ୍ତି । ଶ୍ରୁତି ଯଥା—"ଜ୍ଞାନ ପ୍ରସାଦେନ ବିଶୁଦ୍ଧ ସତ୍ତ୍ୱସ୍ତତସ୍ତୁ ତଂ ପଶ୍ୟତି ନିଷ୍କଳଂ ଧ୍ୟାୟମାନଃ" (ଜ୍ଞାନପ୍ରସାଦରେ ଯାହାର ଚିତ୍ତ ବିଶୁଦ୍ଧ ହୋଇଅଛି, ସେ ଧ୍ୟାନ ପରାୟଣ ହୋଇ ସେହି ନିଷ୍କଳଙ୍କ ବ୍ରହ୍ମଙ୍କୁ ଦର୍ଶନ କରେ । ମୁଃ ୩ ୧ଖ) ସ୍ମୃତି ଯଥା—ଭକ୍ତ୍ୟାତ୍ୱନନ୍ୟୟା ଶକ୍ୟ ଅହମେବଂ ବିଧୋଽର୍ଜ୍ଜୁନ । ଜ୍ଞାତୁଂ-ଦ୍ରଷ୍ଟୁଂ ଚ ତତ୍ତ୍ୱେନ ପ୍ରବେଷ୍ଟୁଞ୍ଚ ପରନ୍ତପ ।" (ଗୀତା ୧୧ ଅ, ୫୪ଶ)

ହେ ପରନ୍ତପ ଅର୍ଜ୍ଜୁନ ! ଅନନ୍ୟା ଭକ୍ତିଦ୍ୱାରାହିଁ ଏହିପରି ମୋତେ ତତ୍ତ୍ୱ ସହିତ ଜାଣି ହୁଏ ଏବଂ ମୋର ଦର୍ଶନଲାଭ ହୁଏ ଏବଂ ମୋଠାରେ ପ୍ରବେଶ କରି ହୁଏ । [ ବେଦାନ୍ତ ଦର୍ଶନ, ପୃ ୪୦୧-୪୦୨, (ବ)]

ଭକ୍ତି:—ଭଜ୍ୟତେ ଇତି ଭଜ-କ୍ତିନ୍ ପୂଜ୍ୟ ବିଷୟରେ ଅନୁରାଗହିଁ ଭକ୍ତି । ଶାଣ୍ଡିଲ୍ୟ ସୂତ୍ରରେ ଭକ୍ତିର ଲକ୍ଷଣ ଏପରି ଦିଆ-ଯାଇଛି "ଅଥାତୋ ଭକ୍ତିଜିଜ୍ଞାସା ସା ପରାନୁରକ୍ତିରୀଶ୍ୱରେ" ଅର୍ଥାତ୍ ଈଶ୍ୱରଙ୍କଠାରେ ପରାନୁରକ୍ତିର ନାମ ଭକ୍ତି । "ଆରାଧ୍ୟ ବିଷୟକ ରାଗତ୍ୱମେବ ଭକ୍ତିତ୍ୱ" ଅର୍ଥାତ୍ ଆରାଧ୍ୟ ବିଷୟରେ ଯେ ଅନୁରାଗ ତାହାହିଁ ଭକ୍ତି ।

ଉପାସନା, ପରମେଶ୍ୱରଙ୍କଠାରେ ପରମ ପ୍ରେମ, "ନ ଇଷ୍ଟ-ଦେବାତ୍ ପରମସ୍ତି କିଞ୍ଚିତ" (ଅର୍ଥାତ୍ ଇଷ୍ଟଦେବଙ୍କଠାରୁ ଅନ୍ୟ କିଛି ଶ୍ରେଷ୍ଠ ନାହିଁ ) ଏହିଭଳି ବୁଦ୍ଧି ହେବା ଚିତ୍ତବୃତ୍ତିର ନାମ ଭକ୍ତି । ଏହି ଭକ୍ତି ପ୍ରୀତିର ଅଧୀନ ।

ବିଷ୍ଣୁ ପୁରାଣରେ ଲେଖା ଅଛି—

"ନାଥ ଯୋନିସହସ୍ରେଷୁ ଯେଷୁ ଯେଷୁ ବ୍ରଜାମ୍ୟହମ୍ ।
ତେଷୁ ତେଷ୍ୱଚ୍ୟୁତା ଭକ୍ତିରଚ୍ୟୁତ ସ୍ତୁ ସଦାତ୍ୱୟି"
ଯା ପ୍ରୀତିରବିବେକାନାଂ ବିଷୟେଷ୍ୱନପାୟିନୀ
ତ୍ୱାମନୁସ୍ମରତଃ ସାମେ ହୃଦୟାନ୍ମାପସର୍ପତୁ ॥
( ୧-୨୦ । ୧୯-୨୦ )

ଧର୍ମାର୍ଥକାମୈଃ କିଂ ତସ୍ୟ ମୁକ୍ତିସ୍ତସ୍ୟ କରେ ସ୍ଥିତା
ସମସ୍ତ ଜଗତାଂ ମୂଲେ ଯସ୍ୟ ଭକ୍ତି ସ୍ଥିର ତ୍ୱୟି ॥
( ୧-୨୦-୨୭ )

"ହେ ଭଗବାନ୍ ! ମୁଁ ଯେ କୌଣସି ଜନ୍ମ ପରିଗ୍ରହ କଲେ ମଧ୍ୟ ତୁମ୍ଭଠାରେ ଯେପରି ମୋର ଭକ୍ତି ନିଶ୍ଚଳ ଥାଏ, ଅବିବେକୀ-ମାନଙ୍କର ବିଷୟରେ ଯେଭଳି ପ୍ରୀତି ଥାଏ, ତୁମ୍ଭଠାରେ ମୋର ଯେପରି ସେହିଭଳି ପ୍ରୀତି ଅବିଚଳିତ ରହେ । ସମସ୍ତ ବ୍ରହ୍ମାଣ୍ଡର ମୂଳୀଭୂତ କୃଷ୍ଣଙ୍କଠାରେ ଯାହାର ସ୍ଥିର ଭକ୍ତି ଥାଏ ତାହାର ମୁକ୍ତି

କରନ୍ତି । ଧର୍ମାର୍ଥ କାମରେ ତାହାର ଅଉ କୌଣସି ପ୍ରୟୋଜନ ନାହିଁ ।”

ଏହି ପ୍ରୀତି ସୁଖକରତ ସଙ୍ଗ । ସୁଖକରତ ନ ହେଲେ ଏହି ପ୍ରୀତି ସଦା କାମ୍ୟ ହୋଇ ପାରିବ ନାହିଁ । ସୁଖ କରତ ନ ହେଲେ ଆସକ୍ତ ହେ ଇ ପାରିବ ନାହିଁ । ପାତଞ୍ଜଳ ଏହି ସଙ୍ଗର ଲକ୍ଷଣ ଏପରି ଲେଖିଛନ୍ତି,,ସୁଖାନୁଶାୟୀ ରାଗଃ” ( ପାତଃ ୨।୭୯ ) । ଯାହା କରୁ କରିବିବ ତାହାର ମୂଳରେ ସୁଖ ଅଛି ଏ ଜ୍ଞାନ ନ ଥିଲେ ସେ କାର୍ଯ୍ୟରେ ଅସକ୍ତ ଜନ୍ମିବ ନାହିଁ । ଏହି ପ୍ରୀତିହିଁ ସୁଖ କରତ ପ୍ରୀତି ।

ଏହି ପ୍ରୀତି ବା ସଙ୍ଗ ସ୍ମରଣ ଓ କୀର୍ତ୍ତିନାଦ ଦ୍ୱାରା ହୋଇଥାଏ । “ଭକ୍ତ ଭଗବାନଙ୍କ ନାମ କୀର୍ତ୍ତିନରେ ଓ ଭଗବାନଙ୍କ ନାମ ସ୍ମରଣରେ ସୁଖବୋଧ କରେ ବୋଲି ପୁନଃପୁନଃ ଏହି ସବୁ କାର୍ଯ୍ୟର ଅନୁଷ୍ଠାନ କରିଥାଏ । ଭକ୍ତିର ବେଗ ଯେତେ ବୃଦ୍ଧି ପାଏ, ଭକ୍ତର ସେତେ କୀର୍ତ୍ତିନାଦରେ ଅସକ୍ତ ଜନ୍ମେ । ସେତେବେଳେ ଭକ୍ତ ଅନନ୍ୟକର୍ମ ହୋଇ ଭଗବତ୍ ଚରଣରେ ମନଃପ୍ରାଣ ସମର୍ପଣ ପୂର୍ବକ ତାଙ୍କର ନାମାଦ କୀର୍ତ୍ତିନରେ କରତ ଥାଏ । ଭକ୍ତ ତଦ୍‌ଗତଚିତ୍ତ ହୋଇ କେବଳ ତାହାଙ୍କର ଭଜନା କରେ ।”

ସ୍ୱୟଂ ଭଗବାନ ଗୀତାରେ କହୁଅଛନ୍ତି—

ମଚ୍ଚିତା ମଦ୍‌ଗତ ପ୍ରାଣା ବୋଧୟନ୍ତ ପରସ୍ପରମ୍ ।
କଥୟନ୍ତଶ୍ଚ ମାଂ ନିତ୍ୟଂ ତୁଷ୍ୟନ୍ତି ଚ ରମନ୍ତି ଚ ।।
ତେଷାଂ ସତତ ଯୁକ୍ତାନାଂ ଭଜତାଂ ପ୍ରୀତି ପୂର୍ବକମ୍ ।
ଦଦାମି ବୁଦ୍ଧିଯୋଗଂ ତଂ ଯେନ ମାମୁପଯାନ୍ତିତେ ।।
୧୦।୯।୧୦

“ଯେଉଁମାନେ ମଚ୍ଚିତ ଓ ମଦ୍‌ଗତ ପ୍ରାଣ ହୋଇ ପରସ୍ପର ମୋର ତତ୍ତ୍ୱ ଅଳାପନ ପୂର୍ବକ ପରସ୍ପରକୁ ବୁଝାଇ ସେହି

ହେତୁ ଅଧିକତର ଅନନ୍ଦ ଲାଭ କରନ୍ତି ଏବଂ ମୋ ପ୍ରତି ଅନୁରକ୍ତ ହୋଇ ଥାଅନ୍ତି ଓ ସେହିଭଳି ଯୋଗଯୁକ୍ତ ହୋଇ ଭକ୍ତି ସହକାରେ ମୋତେ ଅରାଧନା କରନ୍ତି, ମୁଁ ସେମାନଙ୍କୁ ବୁଦ୍ଧିଯୋଗ ଅର୍ଥାତ୍ ତତ୍ତ୍ୱଜ୍ଞାନ ପ୍ରଦାନ କରେ । ଏହି ତତ୍ତ୍ୱଜ୍ଞାନ ଦ୍ୱାରା ସେମାନେ ମୋତେ ପାଅନ୍ତି ।”

କେତେକଙ୍କ ମତରେ ଭକ୍ତିର ଫଳ ମୁକ୍ତି । ଭଗବତ୍ ଗୀତାରେ ଶ୍ରୀକୃଷ୍ଣ କହିଛନ୍ତି—

ତେଷାମହଂ ସମୁଦ୍ଧର୍ତ୍ତା ମୃତ୍ୟୁ ସଂସାର ସାଗରାତ୍ ।
ଭବାମି ନ ଚିରାତ୍ ପାର୍ଥ ମୟ୍ୟାବେଶିତ ଚେତସାମ୍ (୧୨।୭)

“ଯେଉଁମାନଙ୍କର ଚିତ୍ତ ମୋଠାରେ ନିବିଷ୍ଟ ଥାଏ ମୁଁ ସେମାନଙ୍କୁ ମୃତ୍ୟୁରୂପ ସଂସାରସାଗରରୁ ଉଦ୍ଧାର କରିଥାଏ ।”

ଶ୍ୱେତାଶ୍ୱତର ଉପନିଷଦରେ ମଧ୍ୟ ଲେଖାଅଛି—

ତ୍ର୍ୟମ୍ବକଂ ଯଜାମହେ ସୁଗନ୍ଧିଂ ପୁଷ୍ଟିବର୍ଦ୍ଧନମ୍ ।
ଉର୍ବାରୁକମିବ ବନ୍ଧନାନ୍ ମୃତ୍ୟୋର୍ମୁକ୍ଷୀୟ ମାମୃତାତ୍

ଏଠାରେ “ଯଜାମହେ”ର ଅର୍ଥ ଭକ୍ତି ।

ଅନ୍ୟତ୍ର—

“ତତ୍ ସଂସ୍ଥସ୍ୟ ମୃତତ୍ୱୋପଦେଶାତ୍,” “ତତ୍‌ସଂସ୍ଥା” “ତସ୍ମିନ ଈଶ୍ୱରେ ସଂସ୍ଥା ଭକ୍ତିର୍ଯସ୍ୟ” ଈଶ୍ୱରଙ୍କଠାରେ ଯେଉଁମାନଙ୍କର ଅବିଚଳିତ ଭକ୍ତି ଅଛି ସେମାନଙ୍କର ଅମୃତତ୍ୱ ଅର୍ଥାତ୍ ମୋକ୍ଷ ଲାଭ ହୁଏ । କିନ୍ତୁ ବୈଷ୍ଣବମାନଙ୍କ ମତରେ ଭକ୍ତିର ଫଳ ମୋକ୍ଷ ନୁହେଁ, ପ୍ରେମ ଅର୍ଥାତ୍ ପରମ ପୁରୁଷାର୍ଥ ।

ଶାଣ୍ଡିଲ୍ୟ ସୂତ୍ରରେ ଭକ୍ତି ସମ୍ବନ୍ଧରେ ବିସ୍ତୃତଭାବରେ ଆଲୋଚନା ହୋଇଅଛି । ତାର ସାର ମର୍ମ ନିମ୍ନରେ ଦିଆଗଲା ।

"ଉପାସ୍ୟ ପୂର୍ବଂ ଭଗବତA ସନ୍ତଃ. ସ୍ମୃତିଶ୍ଚରଣଃ ଭକ୍ତିଃ"
ଉପାସ୍ୟ ପୂର୍ବକ ଭଗବାନଙ୍କଠାରେ ନିରନ୍ତର ସ୍ମୃତିଶ୍ଚରଣର ନାମ ଭକ୍ତିଃ ।

ଏହି ଭକ୍ତି ବନ୍ଧନା ଓ ଅବନ୍ଧନା ଭେଦରେ ଦୁଇପ୍ରକାର
ବନ୍ଧନା ଭକ୍ତିः—

"କୌଣସି କାରଣ ବ୍ୟତୀତ ଦୈବ ଓ ବୈଦିକ କର୍ମରେ ମନରେ ଯେଉଁ ସ୍ୱାଭାବିକ ସାତ୍ତ୍ୱିକ ବୃତ୍ତି ଜନ୍ମ ହୁଏ, ତାହା ବନ୍ଧନା ଭକ୍ତି । ମିଶ୍ରା ଓ ଶୁଦ୍ଧା ଭେଦରେ ଏହା ଦୁଇ ପ୍ରକାର । ମିଶ୍ରା ଭକ୍ତି ତ୍ରିବିଧ—କର୍ମମିଶ୍ରା, କର୍ମ ଜ୍ଞାନ ମିଶ୍ରା ଓ ଜ୍ଞାନ ମିଶ୍ରା । ତନ୍ମଧ୍ୟରେ କର୍ମମିଶ୍ରା ଭକ୍ତି ତାମସୀ, ରାଜସୀ ଓ ସାତ୍ତ୍ୱିକୀ ଭେଦରେ ତିନି ପ୍ରକାର । ତାମସୀ ଭକ୍ତିରେ ପୁଣି ହିଂସାର୍ଥା । ଦମ୍ଭାର୍ଥା ଓ ମାତ୍ସର୍ଯ୍ୟାର୍ଥାଦି ଭେଦ ଅଛି । ହିଂସା ଦମ୍ଭ ଓ ମାତ୍ସର୍ଯ୍ୟ ଅଭିସନ୍ଧାନ କରି ଯେ କାର୍ଯ୍ୟ କରେ ସେ ତାମସ ଭକ୍ତ। ବିଷୟାର୍ଥା, ଯଶୋର୍ଥା ଓ ଐଶ୍ୱର୍ଯ୍ୟାର୍ଥା ଭେଦରେ ରାଜସୀ ଭକ୍ତି ତିନି ପ୍ରକାର । ଯେ ବିଷୟ, ଯଶ ଓ ଐଶ୍ୱର୍ଯ୍ୟ ନିମିତ୍ତ ଭଗବାନଙ୍କଠାରେ ଭକ୍ତିପରାୟଣ ହୁଏ ସେ ରାଜସୀକ ଭକ୍ତ । କର୍ମକ୍ଷୟାର୍ଥା, ବିଷ୍ଣୁ ପ୍ରୀତ୍ୟାର୍ଥା ଓ ବିଧିସିଦ୍ଧ୍ୟାର୍ଥା ପ୍ରଭୃତି ସାତ୍ତ୍ୱିକ ଭକ୍ତିର ଲକ୍ଷଣ । କର୍ମକ୍ଷୟ ନିମିତ୍ତ ବା ବିଷ୍ଣୁଙ୍କୁ ପ୍ରୀତି ଉଦ୍ଦେଶ୍ୟରେ ଅଥବା ଶାସ୍ତ୍ରରେ ଭଗବାନଙ୍କର ଅରାଧନା ଅଭିହିତ ହୋଇଅଛି, ଇତ୍ୟାଦି କାରଣରେ ଯେ ଭଗବାନଙ୍କର ଅରାଧନା କରନ୍ତି ସେ ସାତ୍ତ୍ୱିକ ଭକ୍ତ । କର୍ମ ଜ୍ଞାନ ମିଶ୍ରା ଭକ୍ତି ତିନିପ୍ରକାର—ଉତ୍ତମା ଭକ୍ତି, ମଧ୍ୟମା ଭକ୍ତି, ଅଧମା ଭକ୍ତି ।

ଉତ୍ତମ—ଶାସ୍ତ୍ରଯୁକ୍ତେ ସୁନିପୁଣ ଦୃଢ ଶ୍ରଦ୍ଧା ଯାର
ଉତ୍ତମ ଅଧିକାରୀ ସେହି ତାରୟେ ସଂସାର ।
ମଧ୍ୟମ—ଶାସ୍ତ୍ର ଯୁକ୍ତି ନାହିଁ ଜାନେ ଦୃଢ ଶ୍ରଦ୍ଧାବାନ

ମଧ୍ୟମ ଅଧିକାରୀ ସେହୁ ମହାଭାଗ୍ୟବାନ ।
ଅଧମ—(କନିଷ୍ଠ)-ଯାହାର କୋମଳ ଶ୍ରଦ୍ଧା ସେ କନିଷ୍ଠଜନ
କମେ କମେ ତେହେଁ ଭକ୍ତ ହୋଇବେ ଉତ୍ତମ ।
ଚୈତନ୍ୟ ଚରିତା ମୃତ ।

ଭାଗବତ ୧୧ଶ ସ୍କନ୍ଧରେ ଭକ୍ତତ୍ରୟର ବିବରଣ ଅଛି ।
ଉତ୍ତମ—ସର୍ବଭୂତେଷୁ ଯଃ ପଶ୍ୟେଦ୍ଭଗବଦ୍ଭାବମାତ୍ମନଃ ।
ଭୂତାନି ଭଗବତ୍ୟାତ୍ମନ୍ୟେଷ ଭାଗବତୋତ୍ତମଃ ॥
ମଧ୍ୟମ—ଈଶ୍ବରେ ତଦଧୀନେଷୁ ବାଲିଶେଷୁ ଦ୍ଵିଷତ୍ସୁଚ ।
ପ୍ରେମମୈତ୍ରୀ କୃପାପେକ୍ଷା ଯଃ କରୋତି ସ ମଧ୍ୟମଃ ॥
କନିଷ୍ଠ—ଅର୍ଚ୍ଚାୟାମେବ ହରୟେ ପୂଜାଂ ଯଃ ଶ୍ରଦ୍ଧୟେ ହତେ
ନ ତଦ୍ଭକ୍ତେଷୁ ଚାନ୍ୟେଷୁ ସଭକ୍ତଃ ପ୍ରାକୃତ ସ୍ମୃତଃ ।
ଜ୍ଞାନମିଶ୍ରାଭକ୍ତ—ମଦ୍‌ଗୁଣ ଶ୍ରୁତି ମାତ୍ରେଣ ମୟି ସର୍ବଗୁହାଶୟେ
ମନୋଗତିରବିଚ୍ଛିନ୍ନା ଯଥା ଗଙ୍ଗାମ୍ଭସୋଽମ୍ବୁଧୌ ।
ଲକ୍ଷଣଂ ଭକ୍ତି ଯୋଗସ୍ୟ ନିର୍ଗୁଣସ୍ୟ ହ୍ୟଦାହୃତମ୍
ଅହୈତୁକ୍ୟ ବ୍ୟବହିତା ଯା ଭକ୍ତିଃ ପୁରୁଷୋତ୍ତମେ
ସାଲୋକ୍ୟ ସାର୍ଷ୍ଟି ସାମୀପ୍ୟ ସାରୂପ୍ୟୈକତ୍ୱମପ୍ୟୁତ
ଦୀୟମାନଂ ନ ଗୃହ୍ଣନ୍ତି ବିନା ମତ୍ସେବନଂ ଜନାଃ ।
ଶାଣ୍ଡିଲ୍ୟ ସୂତ୍ର ଭାଷ୍ୟ ।

ମୋର ଗୁଣ ଶ୍ରବଣ ମାତ୍ରେ ମୋଠାରେ ଯାହାର ଅବିଚ୍ଛିନ୍ନା ମତି ହୁଏ ଏବଂ ପୁରୁଷୋତ୍ତମ ବିଷ୍ଣୁଙ୍କଠାରେ ଯାହାର ଅହୈତୁକୀ ଭକ୍ତି ହୁଏ, ଯେ ମୋର ସେବା ବ୍ୟତୀତ ସାଲୋକ୍ୟାଦି ମୁକ୍ତି ପାଇଲେହେଁ ତାର ଅଭିଳାଷ କରେ ନାହିଁ,ସେମାନେହିଁ ଜ୍ଞାନମିଶ୍ରା-ଭକ୍ତ । ଅବିହିତା ଭକ୍ତି ଚତୁର୍ବିଧ ଯଥାଃ—କାମଜା, ଦ୍ଵେଷଜା, ଭୟଜା ଓ ସ୍ନେହଜା ।

କାମାଦ୍ ଦ୍ୱେଷାଦ୍ ଭୟାତ୍ ସ୍ନେହାତ୍
ଯଥା ଭକ୍ତ୍ୟେ ଶ୍ୱରେ ମନଃ ।
ଅବେଶ୍ୟ ତଦର୍ଥଂ ହିତ୍ୱା ବହବସ୍ତଦ୍ ଗତିଂଗତାଃ।
ଶାଣ୍ଡିଲ୍ୟ ସୂତ୍ରଭାଷ୍ୟ ।

ଗୋପୀମାନେ କାମରେ, କଂସ ଭୟରେ, ଚୈଦ୍ୟାଦି ନରପତି ଦ୍ୱେଷରେ, ସ୍ନେହ ବୃଷ୍ଣି ନରପତିମାନେ ଭକ୍ତିପରାୟଣ ହୋଇଥିଲେ ।

କର୍ମମିଶ୍ରା ଭକ୍ତି ନଅପ୍ରକାର । ଏ ବିଷୟରେ ଶ୍ରୀମଦ୍ ଭାଗବତ ୭ମ ସ୍କନ୍ଧରେ ଶ୍ରବଣାଦି ନବବିଧା ଭକ୍ତିର ଲକ୍ଷଣ ଦିଆଯାଇଛି । ଏଥିରୁ ଗୋଟିଏ ଗୋଟିଏ ଭକ୍ତ୍ୟଙ୍ଗର ଯଜନକାରୀ ମଧ୍ୟ ଭକ୍ତ ନାମରେ ପରିଚିତ । ନବଧା ଭକ୍ତି—

ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋଃ ସ୍ମରଣଂ ପାଦସେବନଂ
ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ ସଖ୍ୟମାତ୍ମନିବେଦନଂ ।
ଇତି ପୁଂସାର୍ପିତା ବିଷ୍ଣୌ ଭକ୍ତିଶ୍ଚେ ନବଲକ୍ଷଣା
କ୍ରିୟତେ ଭଗବତ୍ୟଦ୍ଧା ତନ୍ମନ୍ୟେଽଧୀତମୁତ୍ତମମ୍ ॥
ଭା ୭-୫-୨୩-୨୪ ।

ଶ୍ରବଣ, କୀର୍ତ୍ତନ, ସ୍ମରଣ, ପାଦସେବନ, ଅର୍ଚ୍ଚନ, ବନ୍ଦନ, ଦାସ୍ୟ, ସଖ୍ୟ ଓ ଆତ୍ମ ନିବେଦନ ।

ଭକ୍ତିହିଁ ମନୁଷ୍ୟର ସଂସାର ସାଗରର ତରଣୀ । ଯେ ଭକ୍ତ ସେ ଭଗବାନ ।

ଯେଉଁମାନେ ସ୍ଥିର ଚିତ୍ତରେ କାୟମନବାକ୍ୟରେ ନିଜ ଅଭୀଷ୍ଟ ଦେବତାର ଅନୁଧ୍ୟାନରେ ସବୁବେଳେ ନିୟୁକ୍ତ ଥାଆନ୍ତି ସେମାନେହିଁ ଭକ୍ତ । "ଯେଉଁ ଭକ୍ତ ଅବିଚଳିତ ଚିତ୍ତରେ ହରିଙ୍କୁ ଗୁରୁ ବୋଲି ଜାଣନ୍ତି ସେ କେବଳ ଶ୍ରେଷ୍ଠ ଭକ୍ତ ବୋଲି ଗଣ୍ୟ । ଭକ୍ତିର ସ୍ୱରୂପ ହୃଦୟରେ ଉଦୟ ହେଲେ ଅନର୍ଥ ନାଶ ଓ ସର୍ବସ୍ୱାର୍ଥ

ଲଭ ହୁଏ । ଏକମାତ୍ର ଭଗବାନ, ଭକ୍ତ ଓ ଗୁରୁଙ୍କ ଚରଣ ଧ୍ୟାନ ବ୍ୟତୀତ ଭକ୍ତର ମନରେ କିଛି ହେଲେ ପ୍ରେମଭାବ ସ୍ଥାନ ପାଏ ନାହିଁ । ଯେ ସ୍ତ୍ରୀପୁତ୍ର ସ୍ୱାର୍ଥ ତ୍ୟାଗ ପୂର୍ବକ ଅନନ୍ତ କୌତୁକରେ ଅଥବା ପ୍ରୀତିଭାବରେ ଅବିରାମ ରାଧାକୃଷ୍ଣନାମ ହୃଦୟରେ ଧାରଣ କରନ୍ତି, ସେ କେବଳ ଶ୍ରେଷ୍ଠ; ନତୁବା ସ୍ୱାର୍ଥ ଜ୍ଞାନରେ ପୂଜନ ଭଜନାଦି ବଣିକବୃତ୍ତି ମାତ୍ର । ଯେ ହରିଗୁଣ ଗାନ ଓ ହରିରସ ଆସ୍ୱାଦନକୁ ସର୍ବବିଭୂରର ସାର ଓ ସର୍ବମଙ୍ଗଳର ସାର ଜାଣି ପ୍ରେମରେ ନିମଗ୍ନ ଥାଏ ସେ କେବଳ ଭକ୍ତ । ଦେବତତ୍ତ୍ୱରେ ପ୍ରକୃତ ବିଶ୍ୱାସୀକୁ କେବଳ ଭକ୍ତ କୁହାଯାଏ ।”

ଧର୍ମାନନ୍ୟାନ୍ ପରିତ୍ୟଜ୍ୟ ମାମେକଂ ଭଜ ବିଶ୍ୱସନ୍
ଯାଦୃଶୀ ଯାଦୃଶୀ ଶ୍ରଦ୍ଧା ସିଦ୍ଧିର୍ଭବତି ତାଦୃଶୀ ।

ବ୍ରହ୍ମସଂହିତା ୫ । ୬୨

ବିଶ୍ୱାସ ପୂର୍ବକ କେବଳ ମୋତେ ଭଜନକାରୀ ଶ୍ରଦ୍ଧା ବା ବିଶ୍ୱାସ ଅନୁରୂପ ସିଦ୍ଧିଲାଭ କରିଥାଏ ।

ବିଶ୍ୱକୋଷ ( ବ ) [୧୩ଶ ଭାଗ, ପୃ ୧୯୯]

ଭକ୍ତର ଲକ୍ଷଣ ଓ ମହିମା ସମ୍ବନ୍ଧରେ ହିନ୍ଦୁଧର୍ମ ଶାସ୍ତ୍ରମାନଙ୍କରେ ବହୁତ ଲେଖା ରହିଛି ।

“ପଦ୍ମପୁରାଣରେ ବିଷ୍ଣୁ ଭକ୍ତଙ୍କୁ ଦୈବାସୃଷ୍ଟି ବୋଲି ଉଲ୍ଲିଖିତ ହୋଇଅଛି ଯଥା —

ଦ୍ୱୌଭୂତସର୍ଗୌ ଲୋକେଽସ୍ମିନ୍ ଦୈବୋହ୍ୟାସୁର ଏବଚ
ବିଷ୍ଣୁଭକ୍ତ ସ୍ମୃତୋ ଦୈବୋ ହ୍ୟାସୁରସ୍ତଦ୍ୱିପର୍ଯ୍ୟୟଃ ।

ହରିଭକ୍ତି ଶରଣାର୍ଥୀ ଭକ୍ତ ସବୁବେଳେ କୃଷ୍ଣଭକ୍ତ ପରାୟଣ ହୋଇ ଭଜନସାଧନ କରିବ । ଗୀତାରେ ସ୍ୱୟଂ ଶ୍ରୀକୃଷ୍ଣ ଏହା ଅର୍ଜୁନଙ୍କୁ କହି ଅଛନ୍ତି—

ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ
ଅହଂତ୍ୱା ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମାଶୁଚଃ ।
ଗୀ, ୧୮ । ୬୬

ଶ୍ରୀଭାଗବତରେ ମଧ୍ୟ ଏ କଥା ଲେଖାଅଛି ।
ଆଜ୍ଞାୟୈବ ଗୁଣାନ୍ ଦୋଷାନ୍ମୟାଦିଷ୍ଟାନପି ସ୍ୱକାନ୍
ଧର୍ମାନ୍ ସନ୍ତ୍ୟଜ୍ୟ ଯଃ ସର୍ବାନ୍ ମାଂ ଭଜେତ ସ ସତ୍ତମଃ ।
ଭା, ୧୧ । ୧୧ । ୩୨

ଯେଉଁମାନେ ବିଷ୍ଣୁଭକ୍ତିକୁ ତ୍ୟାଗ କରନ୍ତି ସେମାନେ ନିଜେ ନରକଗାମୀ ହୁଅନ୍ତି ଏବଂ ପିତୃପିତାମହାଦିଙ୍କୁ ମଧ୍ୟ ନରକଗାମୀ କରନ୍ତି । ଯଥା—

ବିଷ୍ଣୁଭକ୍ତି ବିନା ଯଜନ୍ ନ ପଶ୍ୟତି ନରାଧମଃ
ଅମ୍ବନା ସହିତଂ ତସ୍ୟ ପିତରଂ ନରକଂ ନୟେତ୍ । "ଅଗମ"

କାମନା ଥାଉ ବା ନ ଥାଉ ଭକ୍ତି ଏକାନ୍ତ ଭକ୍ତିରେ ଉଦାଧିରହିତ ପରମପୁରୁଷଙ୍କୁ ଅର୍ଚ୍ଚନା କରିବ ।

ଭାଗବତ ୨ୟ ସ୍କନ୍ଧରେ ଲେଖା ଅଛି—

ଅକାମଃ ସର୍ବକାମୋ ବା ମୋକ୍ଷକାମ ଉଦାରଧୀଃ
ତୀବ୍ରେଣ ଭକ୍ତି ଯୋଗେନ ଯଜେତ ପୁରୁଷଂ ପରମ୍ ।

ଏକମାତ୍ର ଅମଳ ଭକ୍ତିହିଁ ହରିଙ୍କ ପ୍ରୀତିବିଧାନ କରିପାରେ । ଯଥା— ନ ଦାନଂ ନ ତପୋ ନେଜ୍ୟା ନ ଶୌଚଂ ନ ବ୍ରତାନିଚ
ପ୍ରୀୟତେଽମଳୟା ଭକ୍ତ୍ୟା ହରିରନ୍ୟଦ୍ ବିଡମ୍ବନମ୍
ଭାଗବତ ୭ । ୩ । ୧୦

ପ୍ରକୃତ ଭକ୍ତ ନିଜ ଅଭୀଷ୍ଟ ଦେବତା ପ୍ରତି ଅକୃଷ୍ଟ ରହିବ କିନ୍ତୁ ଅନ୍ୟ ଦେବ ଦେବୀ ଦେଶମାନଙ୍କଠାରେ ଦ୍ୱେଷଭଞ୍ଜନ କରିବ ନାହିଁ ।

ଯସ୍ତୁ ନାରାୟଣଂ ଦେବ ବ୍ରହ୍ମରୁଦ୍ରାଦି ଦୈବତୈଃ
ସମତ୍ୱେନୈବ ବୀକ୍ଷେତ ସପାଷଣ୍ଡୀ ଭବେଦଧ୍ରୁବମ୍ । (ପଦ୍ମପୁରାଣ)

ହରିଭକ୍ତ ବୈଷ୍ଣବମାନଙ୍କର ମହିମାଦି ବର୍ଣ୍ଣନା କରିବା ଶକ୍ତି ସାଧାରଣ ପକ୍ଷରେ ସମ୍ଭବ ନୁହେଁ । ପୁରାଣ ଓ ଶାସ୍ତ୍ରମାନଙ୍କରେ ଏ ବୈଷ୍ଣବମାନଙ୍କର ମହିମା ବହୁଳ ଭାବରେ ବର୍ଣ୍ଣିତ ହୋଇଛି ।

"ହରିଭକ୍ତକୁ ନୀଚଜାତି ବୋଲି ଜ୍ଞାନ କଲେ ନରକ ଗତି ହୁଏ । ପତିତପାବନ ଗୁହକଙ୍କୁ ଶ୍ରୀ ଭଗବାନ୍ ରାମଚନ୍ଦ୍ର କୋଳ କରିଥିଲେ । ବାମନ ଅବତାରରେ ସେ ଅସୁର ଶ୍ରେଷ୍ଠ ବଳିରାଜାଙ୍କର ଦାସତ୍ୱ ସ୍ୱୀକାର କରିଥିଲେ । ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ସଖାରୂପେ ଅର୍ଜ୍ଜୁନଙ୍କ ସାରଥି ହୋଇଥିଲେ ଏବଂ ପାଣ୍ଡବପତ୍ନୀ ଦ୍ରୌପଦୀଙ୍କର ଲଜ୍ଜା ନିବାରଣ କରିଥିଲେ । ସେହି ଭକ୍ତପ୍ରେମରେ ସେ ପାଳୟିତ୍ରୀ ଯଶୋମତୀଙ୍କର ବନ୍ଧନ ଓ ଗୋପପତି ନନ୍ଦଙ୍କର ବାଧାବହନ-କ୍ଲେଶ ସହ୍ୟ କରିଥିଲେ । ଭକ୍ତରାଜ ଅକ୍ରୁର ଓ ବିଦୁର ଭକ୍ତି ସାଧନାରେ ତାହାଙ୍କୁ ଲାଭ କରିଥିଲେ । ଭକ୍ତର ମନୋରଥ ପୂର୍ଣ୍ଣକରିବା ମାନସରେ ସେ ଭକ୍ତବର ପ୍ରହ୍ଲାଦଙ୍କ ପ୍ରାର୍ଥନାରେ ସ୍ଫଟିକସ୍ତମ୍ଭ ଭିତରେ ନୃସିଂହ ରୂପରେ ହିରଣ୍ୟ କଶ୍ୟପଙ୍କୁ ଦେଖା ଦେଇଥିଲେ । ମହାଭାରତର ରାଜଧର୍ମପର୍ବାଧ୍ୟାୟରେ ଭଗବାନ ବଳଙ୍କୁ କହୁଛନ୍ତି—

ନିତ୍ୟଂ ଯେ ପ୍ରାତରୁତ୍ଥାୟ ବୈଷ୍ଣବାନାନ୍ତୁ କୀର୍ତ୍ତିନମ୍
କୁର୍ବନ୍ତି ତେ ଭାଗବତାଃ କୃତକୃତ୍ୟା କଳୌ ବଳେ ।

ପ୍ରାତଃକାଳରେ ଶଯ୍ୟା ଉତ୍ଥାନ ପୂର୍ବକ ବୈଷ୍ଣବମାନଙ୍କର ନାମ ଗୁଣ କୀର୍ତ୍ତିନକାରୀହିଁ କଳିରେ ଭାଗବତ ଓ କୃତକୃତ୍ୟ ବିବେଚିତ ହୁଅନ୍ତି ।

"ଭକ୍ତ ଓ ଭଗବାନଙ୍କ ଦେହ ଦୁଇଟି ପରସ୍ପର ଭିନ୍ନ ହେଲେ ମଧ୍ୟ ଏମାନଙ୍କର ହୃଦୟ ଏକ । ଭକ୍ତ ଭଗବାନ ଭିନ୍ନ ଅପର କିଛି

ଧ୍ୟାନ କରିପାରେ ନାହିଁ, ଭଗବାନ ମଧ୍ୟ ସେହିପରି । ଭଗବାନ୍ ଭକ୍ତରୂପରେ ଲୋକସମୂହର ବିଧାନ କରି ଥାଆନ୍ତି । ଭକ୍ତର ମହିମା ସମ୍ବନ୍ଧରେ ନିମ୍ନଲିଖିତ ପ୍ରମାଣ ଉଲ୍ଲେଖ କରାଗଲା ।

ଶୂଦ୍ରଂ ବା ଭଗବଦ୍ ଭକ୍ତଂ ନିଷାଦଂ ଶ୍ୱପଚଂ ତଥା
ବୀକ୍ଷତେ ଜାତି ସାମାନ୍ୟାତ୍ ସଯାତି ନରକଂ ଧ୍ରୁବ ।
ଇତିହାସ ସମୁଚ୍ଚୟ ।

ନମେ ଭକ୍ତଶ୍ଚତୁର୍ବେଦୀ ମଦ୍ଭକ୍ତ ଶ୍ୱପଚଃ ପ୍ରିୟଃ
ତସ୍ମୈ ଦେୟଂ ତତୋ ଗ୍ରାହ୍ୟଂ ସ ଚ ପୂଜ୍ୟୋ ଯଥା ହ୍ୟହମ୍ ।
ଇତିହାସ ସମୁଚ୍ଚୟ ।

ବିଷ୍ଣୁ ପାଦୋଦକଂ ପୀତ୍ୱା ଭକ୍ତପାଦୋଦଂ ତଥା
ଯ ଅଶ୍ନୁମତି ସଲ୍ଲୋହାତ୍ ବ୍ରହ୍ମହାସ ନିଗଦ୍ୟତେ(ଗରୁଡପୁରାଣ)

ଚତୁର୍ଧାଃ କି ପୁନଃ ସର୍ବେ ଅଜ୍ଞଃ ଶଠୋ ଭବେଦ୍ୟଦି
ନବୋଽପି ସମତାଂ ଯାନ୍ତି କୃଷ୍ଣଭକ୍ତସ୍ୟ ନାରଦ (ପଦ୍ମ ପୁରାଣ)
ବିଷ୍ଣୁ ଭକ୍ତସ୍ୟ ଯେ ଦାସା ବୈଷ୍ଣବାନ୍ନଭୁଜଶ୍ଚ ଯେ
ତେଽପି କଣ୍ଟୁଭୁଜାଂ ବୈଶ୍ୟ ଗତିଂ ଯାନ୍ତି ନିରାକୁଳାଃ (ପଦ୍ମ ପୁରାଣ)
ଆରାଧନାନାଂ ସର୍ବେଷାଂ ବିଷ୍ଣୋରାରାଧନଂ ପରମ୍
ତସ୍ମାତ୍ ପରତରଂ ଦେବୀ ତଦୀୟାନାମ୍ ସମର୍ଚ୍ଚନଂ (ଲଘୁଭାଗବତ)
ତସ୍ମାତ୍ ସର୍ବପ୍ରଯତ୍ନେନ ବୈଷ୍ଣବାନ୍ ପୂଜୟେତ୍ ସଦା
ସର୍ବଂ ତରନ୍ତି ଦୁଃଖୌଘଂ ମହାଭାଗବତାର୍ଚ୍ଚନାତ୍ (ଲଘୁଭାଗବତ)
ସର୍ବତ୍ର ବୈଷ୍ଣବା ପୂଜ୍ୟାଃ ସ୍ୱର୍ଗେ ମର୍ତ୍ତ୍ୟେ ରସାତଳେ
ଦେବତାନାଂ ମନୁଷ୍ୟାନାଂ ତଥୈବୋରଗସାମ । ( ହରି. ଭ )
ଅହମେବ ଦ୍ୱିଜଶ୍ରେଷ୍ଠ ନିତ୍ୟଂ ପ୍ରଚ୍ଛନ୍ନ ବିଗ୍ରହ
ଭଗବଦ୍ ଭକ୍ତରୂପେଣ ଲୋକାନ୍ ରକ୍ଷାମି ସର୍ବଦା (ଇତିହାସ ସମୁଚ୍ଚୟ)

ବିଷ୍ଣୁ ଭକ୍ତବୈଷ୍ଣବମାନଙ୍କ ମହିମା ଏପରି ଭାବରେ ବହୁ ଶାସ୍ତ୍ରରେ କୀର୍ତ୍ତିତ ହୋଇଅଛି । ସ୍ୱୟଂ ଭଗବାନ୍ ଭକ୍ତରୂପରେ ସଂସାର ରକ୍ଷା କରୁଥିବାରୁ କେବଳ ତାଙ୍କର ସେବାହିଁ ଉତ୍କୃଷ୍ଟ ସେବା । ଭକ୍ତ ଓ ଭଗବାନଙ୍କ ଭିତରେ କିଛି ପ୍ରଭେଦ ନାହିଁ । ସେହି ହେତୁ ଭକ୍ତଙ୍କର ସେବା କରିବା ଯାହା ସ୍ୱୟଂ ଭଗବାନଙ୍କ ସେବାକରିବା ତାହା । ଭକ୍ତର ସେବା କଲେ ସକଳ ପ୍ରକାର ପାପତାପ ବିନାଶ ହୁଏ, ମନୁଷ୍ୟର ନରକ ଭୟ ବିଦୂରିତ ହୁଏ । "ଭକ୍ତିରସାମୃତସିନ୍ଧୁ"ରେ ଭକ୍ତମାନଙ୍କ ମଧ୍ୟରେ ବିବିଧ ଭେଦ ବର୍ଣ୍ଣନା କରାଯାଇଛି । ଭକ୍ତମାନଙ୍କ ମଧ୍ୟରେ ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ମଧୁର ରସର ଭକ୍ତମାନେ ଶ୍ରେଷ୍ଠ ।

ଶାନ୍ତ:—ସନକସନନ୍ଦାଦି

ଦାସ:—ଦାସଭକ୍ତ ଚତୁର୍ବିଧ ପ୍ରକାର—

ଅଧିକୃତ ଦାସ—ବ୍ରହ୍ମା, ଶିବ, ଇନ୍ଦ୍ର ଇତ୍ୟାଦି ।

ଆଶ୍ରିତଦାସ—ଏ ପୁଣି ତିନି ପ୍ରକାର ।

ଶରଣାଗତ—କାଳିୟନାଗ ଏବଂ ଜରାସନ୍ଧର କାରାଗାରରେ ବନ୍ଦୀ ନୃପତିମାନେ ।

ଜ୍ଞାନନିଷ୍ଠ—ଏମାନେ ମୁକ୍ତି ଇଚ୍ଛା ପରିତ୍ୟାଗକରି କେବଳ ହରିଙ୍କୁ ଆଶ୍ରୟ କରନ୍ତି ଶୌନକାଦି ଋଷିମାନେ ।

ସେବାନିଷ୍ଠ—ପ୍ରଥମରୁ ଯେଉଁମାନେ ଭଜନ ବିଷୟରେ ଆସକ୍ତ । ଚନ୍ଦ୍ରଧ୍ୱଜ, ହରିହର, ବହୁଳାଶ୍ୱ, ଇକ୍ଷ୍ୱାକୁ, ଶ୍ରୁତଦେବ, ପୁଣ୍ଡରିକ ପ୍ରଭୃତି ।

ପାରିଷଦଦାସ—ଉଦ୍ଧବ, ଦାରୁକ, ସାତ୍ୟକି, ଭୀଷ୍ମ, ବିଦୁର ପ୍ରଭୃତି ।

ଅନୁଗଦାସ—ଯେଉଁମାନେ ପ୍ରଭୁଙ୍କର ସେବା କାର୍ଯ୍ୟରେ ଅସକ୍ତ ଶକ୍ତ । ଏମାନେ ଦୁଇପ୍ରକାର ।

ପୁରସ୍ଥ—ସୁଚନ୍ଦ୍ର, ମଣ୍ଡଳ, ସ୍ତନ୍ୟ ଓ ସୁତନ୍ୟ ।

ବ୍ରଜସ୍ଥ—ରକ୍ତକ, ପତ୍ରକ, ପତ୍ରୀ, ମଧୁକଣ୍ଠ ପ୍ରଭୃତି ।

ସଖ୍ୟରସର ଭକ୍ତ—ଏମାନେ ଦୁଇପ୍ରକାର ଯଥା:—

( ୧ ) ପୁରସମ୍ବନ୍ଧୀ—ଅର୍ଜ୍ଜୁନ, ଭୀମ, ଦ୍ରୁପଦନନ୍ଦନୀ ପ୍ରଭୃତି ।

( ୨ ) ବ୍ରଜସମ୍ବନ୍ଧୀ—ଏମାନେ ଚାରିଭାଗରେ ବିଭକ୍ତ— ସୁହୃତସଖା—ପ୍ରଭୁଙ୍କଠାରୁ ବୟସରେ ବଡ । ପ୍ରଭୁଙ୍କୁ ଶତ୍ରୁମାନଙ୍କ ହାତରୁ ରକ୍ଷା କରିବା ଏମାନଙ୍କ କାର୍ଯ୍ୟ । ସୁଭଦ୍ର, ମଣ୍ଡଳଭଦ୍ର, ବୀରଭଦ୍ର, ବଳଭଦ୍ର ମହାଗୁଣ, ବିଜୟ ପ୍ରଭୃତି ।

ସଖା—ଯେଉଁମାନଙ୍କର ସଖ୍ୟ କିଞ୍ଚିତ ଦାସ୍ୟ ମିଶ୍ରିତ ପ୍ରଭୁଙ୍କ-ଠାରୁ ବୟସରେ ସାନ । ପ୍ରଭୁଙ୍କର ସେବା ସୁଖରେ ଅଭିଳାଷୀ । ବିଶାଳ, ବୃଷଭ, ଓଜସ୍ୱୀ, ମରନ୍ଦ, କୁସୁମାପୀଡ଼ ପ୍ରଭୃତି ।

ପ୍ରିୟସଖା—ଯେଉଁମାନଙ୍କ ସଖ୍ୟ ଶୁଦ୍ଧ, ସମବୟସ୍କ, ଶ୍ରୀଦାମ, ସୁଦାମ, ବସୁଦାମ, ସ୍ତୋକକୃଷ୍ଣ ପ୍ରଭୃତି । ଏମାନେ ବିବିଧ ଖେଳ ଓ ବାହୁଯୁଦ୍ଧ ପ୍ରଭୃତି କୌତୁକଦ୍ୱାରା ପ୍ରଭୁଙ୍କୁ ଆନନ୍ଦିତ କରନ୍ତି ।

ପ୍ରିୟ ନର୍ମସଖା—ପ୍ରିୟସଖାଙ୍କଠାରୁ ଶ୍ରେଷ୍ଠ, ଅତ୍ୟନ୍ତ ରହସ୍ୟ କାର୍ଯ୍ୟରେ ନିଯୁକ୍ତ ଓ ଭାବବିଶେଷଧାରୀ । ସୁବଳ, ଅର୍ଜ୍ଜୁନ, ଗୋପ, ଗନ୍ଧର୍ବ, ବସନ୍ତ ଏବଂ ଉଜ୍ଜ୍ୱଳ ପ୍ରଭୃତି ।

ବତ୍ସଳ--ରସରଭକ୍ତ—ପ୍ରଭୁଙ୍କର ଗୁରୁବର୍ଗ । ଯଶୋଦା, ନନ୍ଦ, ରୋହିଣୀ, ବ୍ରହ୍ମା, ଦେବକୀ, ବସୁଦେବ, କୁନ୍ତୀ, ସାନ୍ଦିପନି ମୁନି ପ୍ରଭୃତି ।

ମଧୁର ରସ—ପ୍ରେୟସୀବର୍ଗ । ବୃଷଭାନୁ ନନ୍ଦିନୀ ରାଧିକା ସର୍ବ ପ୍ରଧାନ । "ପ୍ରେୟସୀଷୁ ହରେରାସୁ ପ୍ରବରା ବାର୍ଷଭାନବୀ" ।

ସାଧନ—ପରମ୍ପରାସିଦ୍ଧ କୃଷ୍ଣଭକ୍ତମାନଙ୍କ ଭିତରେ ଦ୍ୱିବିଧ ଭକ୍ତ ଦେଖାଯାଆନ୍ତି ଯଥା—ସାଧକ ଓ ସିଦ୍ଧ ।

ସାଧକ—ବିଲ୍ୱମଙ୍ଗଳ ଓ ତାଙ୍କ ଭଳି ଭକ୍ତମାନେ ।

ସିଦ୍ଧ— ଏମାନେ ପୁଣି ଦୁଇ ପ୍ରକାର । ସଂପ୍ରାପ୍ତସିଦ୍ଧ, ନିତ୍ୟସିଦ୍ଧ ।

ସଂପ୍ରାପ୍ତସିଦ୍ଧ—ଏପୁଣି ଦୁଇ ପ୍ରକାର । ସାଧନସିଦ୍ଧ—ମାର୍କଣ୍ଡେୟାଦି । କୃପାସିଦ୍ଧ—ଯଜ୍ଞପତ୍ନୀ, ବଳିଦୈତ୍ୟ ଓ ଶୁକଦେବ ପ୍ରଭୃତି ।

ନିତ୍ୟସିଦ୍ଧ—ଯାଦବ ଓ ଗୋପୀମାନେ ।

ଉପାସନା:—ଶ୍ରୀନିମ୍ବାର୍କ ସଂପ୍ରଦାୟର ବୈଷ୍ଣବମାନେ ଶ୍ରୀକୃଷ୍ଣ ଏବଂ ଶ୍ରୀମତୀ ରାଧିକାଙ୍କ ଯୁଗଳ ମୂର୍ତ୍ତିକୁ ବିଶେଷ ଭାବରେ ଉପାସନା କରନ୍ତି । ଏହାର ତତ୍ତ୍ୱ ଏ ସମ୍ପ୍ରଦାୟର ପଣ୍ଡିତମାନେ ନିମ୍ନଲିଖିତ ପ୍ରକାରେ ବ୍ୟକ୍ତ କରନ୍ତି । "ଦ୍ୱୈତାଦ୍ୱୈତ" ସିଦ୍ଧାନ୍ତରେ ଲେଖାଅଛି ।

"ଜଗତର ସମସ୍ତ ରୂପ ବ୍ରହ୍ମର ବିଶେଷ ବିଶେଷ ରୂପ । ଏସବୁ ବିଶେଷ ରୂପରେ ଚିତ୍‌ଶକ୍ତିର ପ୍ରକାଶର ପ୍ରଭେଦ ଅନନ୍ତ ପ୍ରକାର । ଏହି ସବୁ ପ୍ରଭେଦକୁ ଲକ୍ଷ୍ୟକରି ଜୀବସମୂହକୁ ଶ୍ରେଣୀବଦ୍ଧ କରିଯାଏ ଏବଂ ଏହା ପାରମ୍ପରିକ ସଙ୍ଗ ଓ ସହାୟତା ଅବଲମ୍ବନରେ ନିଜ ନିଜ ଶକ୍ତିରେ ଉନ୍ନତ ଓ ଅବନତ କରି ଥାଆନ୍ତି । ଏହା ପ୍ରତ୍ୟକ୍ଷ ପ୍ରମାଣସିଦ୍ଧ । ଜାଗତିକ ବ୍ୟାପାରରେ ସର୍ବଦା ବ୍ରହ୍ମଶକ୍ତି ତ୍ରିବିଧଭାବରେ ପ୍ରକାଶିତ ।

(୧) ଜ୍ଞାନପ୍ରଧାନାତ୍ମିକା ଶକ୍ତି, ଯାହାକୁ ସତ୍ତ୍ୱଗୁଣ କୁହାଯାଏ ।

(୨) କର୍ମପ୍ରଧାନାତ୍ମିକା ଶକ୍ତି, ଯାହାକୁ ରଜୋଗୁଣ କୁହାଯାଏ ।

(ଗ) ଏ ଦୁଇଟିର ଅବରୋଧ ସ୍ୱଭାବ ସ୍ଥିତିଶୀଳ ତମୋଗୁଣ।

ସତ୍ତ୍ୱଗୁଣ କେବଳ ବ୍ରହ୍ମର ଗୁଣାତୀତ ଅବସ୍ଥାର ନିକଟତମ ସତ୍ତ୍ୱ। ଏହାର ସ୍ୱରୂପ ଭଗବଦ୍‌ଗୀତାରେ ବର୍ଣ୍ଣନା କରାଯାଇଛି।

ତତ୍ର ସତ୍ତ୍ୱଂ ନିର୍ମ୍ମଳତ୍ୱାତ୍ ପ୍ରକାଶକମନାମୟମ୍
ସୁଖସଙ୍ଗେନ ବଧ୍ନାତି ଜ୍ଞାନସଙ୍ଗେନ ଚାନଘ ।। ୧୪।୬

ଅତଏବ ସତ୍ତ୍ୱ ସ୍ୱରୂପତଃ ସୁଖାତ୍ମକ (ଆନନ୍ଦାତ୍ମକ) ତଥା ଜ୍ଞାନାତ୍ମକ, ଏହି ଜ୍ଞାନ ଓ ଆନନ୍ଦ ଗୁଣରେ ଗଣ୍ୟ, ସୁତରାଂ ତଲିପ୍ତ ପୁରୁଷ ଗୁଣାତୀତ ମୁକ୍ତ ନୁହେଁ, ପୁଣି ଏହି ଆନନ୍ଦ ଓ ଜ୍ଞାନ ତଥା ମୁକ୍ତାବସ୍ଥାର ଜ୍ଞାନ ଓ ଆନନ୍ଦ, ଯାହା ଅମୂର୍ତ୍ତି ବ୍ରହ୍ମଙ୍କର ସ୍ୱରୂପଗତ, ଏହି ଦୁଇଟିରେ ବହୁତ ପ୍ରଭେଦ ଅଛି। ପରନ୍ତୁ ପ୍ରକାଶିତ ଜଗତରେ ନିର୍ମଳ ସତ୍ତ୍ୱହିଁ ଜ୍ଞାନ ଓ ଆନନ୍ଦର ଅଦର୍ଶସ୍ଥାନୀୟ। ଏହି ସତ୍ତ୍ୱଗୁଣାଧିଷ୍ଠିତ ପୁରୁଷ ରୂପରେ ମଧ୍ୟ ବ୍ରହ୍ମର କୃଷ୍ଣ ଓ ବିଷ୍ଣୁ ସଂଜ୍ଞା ହୁଏ। ଏହି ସତ୍ତ୍ୱ ଧିଷ୍ଠିତ ରୂପ ଦ୍ୱିବିଧ :—

(୧) ସମଗ୍ର ଜଗତକୁ ସମଷ୍ଟି ଭାବରେ ଅଧିଷ୍ଠାତୃରୂପ-ଏହିରୂପରେ ଏହାଙ୍କର ନାମ ଅନନ୍ତଦେବ।

(୨) ଗୋଲକାଧିପତି ରୂପ—ଏହା ସର୍ବାପେକ୍ଷା ନିର୍ମଳ ସତ୍ତ୍ୱଗୁଣ ବିଶିଷ୍ଟ କୃଷ୍ଣ ( ବିଷ୍ଣୁ ) ରୂପ।

ପ୍ରତ୍ୟେକ ବିଶେଷ ବିଶେଷରୂପ ଦ୍ୱାରା ବ୍ରହ୍ମ ବିଶେଷ ବିଶେଷ ଜାଗତିକ କାର୍ଯ୍ୟ ସମ୍ପାଦନ କରୁଅଛନ୍ତି। ଏଥିରେ ଏହାଙ୍କର ଗୋଲକାଧି-ପତି-କୃଷ୍ଣ-ରୂପ ଜାଗତିକ ସମସ୍ତ ଜୀବଙ୍କ ନିମିତ୍ତ ଅଶେଷ କଲ୍ୟାଣସାଧକ ଏବଂ ମୁକ୍ତିପ୍ରଦ। ଏହି କୃଷ୍ଣ ବ୍ରହ୍ମଙ୍କ ଅମୂର୍ତ୍ତି ଓ ମୂର୍ତ୍ତି ରୂପ ମଧ୍ୟରେ ଶ୍ରେଷ୍ଠସ୍ୱରୂପ ବର୍ତ୍ତମାନ ରହି ସାଧାରଣ ଜୀବ-ମାନଙ୍କର ମୋକ୍ଷ ପ୍ରାପ୍ତି ନିମିତ୍ତ ପ୍ରଧାନ ହେତୁ ଅଟନ୍ତି। ବିଷ୍ଣୁ

ମୋକ୍ଷଦାତା । ଏହାସବୁ ଶାସ୍ତ୍ରରେ ବର୍ଣ୍ଣିତ ଅଛି । ଭାଗବତରେ ଲେଖାଅଛି—

ସତ୍ତ୍ୱଂ ରଜସ୍ତମ ଇତ ପ୍ରକୃତେର୍ଗୁଣା—
ସ୍ତୈର୍ଯୁକ୍ତ ପରଃ ପୁରୁଷ ଏକ ଇହାସ୍ୟ ଧତ୍ତେ ।
ସ୍ଥିତ୍ୟାଦୟେ ହରି ବିରଞ୍ଚି ହରେତି ସଂଜ୍ଞା
ଶ୍ରେୟାଂସି ତତ୍ର ଖଲୁ ସତ୍ତ୍ୱତନୋର୍ନୃଣାଂ ସ୍ୟୁଃ ।

"ସତ୍ତ୍ୱ, ରଜ ଓ ତମଃ—ଏହି ତିନି ପ୍ରକୃତିର ଗୁଣ । ଏକ ପରମ ପୁରୁଷହିଁ ଜଗତର ସୃଷ୍ଟି-ସ୍ଥିତି- ଲୟ ସମ୍ବନ୍ଧୀୟ କାର୍ଯ୍ୟର ସମ୍ପାଦନ କରିବାପାଇଁ ଏହି ତିନି ଗୁଣକୁ ଧାରଣ କରି ହରି ଓ ବିରଞ୍ଚି ସଂଜ୍ଞାକୁ ପ୍ରାପ୍ତ ହୁଅନ୍ତି । ଏଥିରେ ସତ୍ତ୍ୱ-ମୟ-ତନୁ ହରି କେବଳ ମନୁଷ୍ୟମାନଙ୍କର ଶ୍ରେୟ ( ମୋକ୍ଷ ) ସାଧନର ହେତୁ ହୁଅନ୍ତି ।"

"ତଦ୍‌ବିଷ୍ଣୋ ପରମଂ ପଦ ସଦା ପଶ୍ୟନ୍ତି ସୂରୟଃ" ଇତ୍ୟାଦି ବୈଦିକ ମନ୍ତ୍ର ମଧ୍ୟ ଏହା ପ୍ରମାଣ କରୁଅଛି ।

"ଶଙ୍କର ଯେପରି ଜ୍ଞାନଦାତା ଗୁରୁ ବୋଲି ସର୍ବତ୍ର ବର୍ଣ୍ଣିତ, ସେହିପରି ଜୀବମାନଙ୍କର ଦୁଃଖର ଅତ୍ୟନ୍ତ ନିବୃତ୍ତି ରୂପ ମୋକ୍ଷ ନିମିତ୍ତ ବିଷ୍ଣୁହିଁ ମୁକ୍ତିଦାତା ବୋଲି ବର୍ଣ୍ଣିତ ହୋଇଅଛନ୍ତି ।"

"ଯେଉଁ ଲୋକ କେବଳ ଅବ୍ୟକ୍ତ ଅକ୍ଷର ବ୍ରହ୍ମର ଉପାସନା କରନ୍ତି ସେ ମଧ୍ୟ ଏହି ସାଧନାର ଫଳ ସ୍ୱରୂପ ଅନ୍ତରେ ଏହି ସଗୁଣ ବ୍ରହ୍ମ ବିଷ୍ଣୁଙ୍କୁ ପ୍ରାପ୍ତ ହୁଅନ୍ତି । ଏହା ଭଗବଦ୍‌ଗୀତାରେ ସ୍ପଷ୍ଟଭାବରେ ବର୍ଣ୍ଣିତ ହୋଇଛି ।"—

ଯେ ତ୍ୱକ୍ଷରମନିର୍ଦ୍ଦେଶ୍ୟମବ୍ୟକ୍ତଂ ପର୍ଯ୍ୟୁପାସତେ
ସର୍ବତ୍ର ଗମଚିନ୍ତ୍ୟଞ୍ଚ କୂଟସ୍ଥ ମଚଳଂ ଧ୍ରୁବମ୍ । ୧୨,୩

ସନ୍ନିୟମ୍ୟେନ୍ଦ୍ରିୟ ଗ୍ରାମଂ ସର୍ବତ୍ର ସମ ବୁଦ୍ଧୟଃ ।
ତେ ପ୍ରାପ୍ନୁବନ୍ତି ମାମେବ ସର୍ବଭୂତ ହିତେରତାଃ ୧୨।୪

"ସର୍ବତ୍ର 'ସମବୁଦ୍ଧି' ତଥା ସର୍ବଭୂତର ହିତକାର୍ଯ୍ୟରେ ରତ ଯେଉଁ ଲୋକ ଇନ୍ଦ୍ରିୟ ସମୂହକୁ ବଶୀଭୂତ କରି ଅନିର୍ଦ୍ଦେଶ୍ୟ, ଅବ୍ୟକ୍ତ, ସର୍ବଗ, ଅଚିନ୍ତ୍ୟ, ଅଚଳ, ଧ୍ରୁବ, କୂଟସ୍ଥ ଅକ୍ଷରକୁ ସମ୍ୟକ ଉପାସନା କରେ ସେ ମୋତେ ପ୍ରାପ୍ତ ହୁଏ ।

ଯେଉଁ ଲୋକ ବ୍ରହ୍ମର ସଗୁଣ ରୂପକୁ ଉପାସନା କରନ୍ତି ତାହାଙ୍କୁ ସର୍ବଶ୍ରେଷ୍ଠ ଯୋଗବିତ୍ ବୋଲି ଭଗବାନ କହିଅଛନ୍ତି ।

ମୟ୍ୟାବେଶ୍ୟ ମନୋ ଯେ ମାଂ ନିତ୍ୟଯୁକ୍ତା ଉପାସତେ
ଶ୍ରଦ୍ଧୟା ପରୟୋପେତାସ୍ତେ ମେ ଯୁକ୍ତତମା ମତାଃ ୧୨।୨

ମୋର ସଗୁଣ ରୂପରେ ମନକୁ ଏକାଗ୍ର କରି ସଦା ମୋଠାରେ ଯୁକ୍ତ ରହି ଯେଉଁ ଲୋକ ଉତ୍ତମ ଭକ୍ତିରେ ମୋର ଉପାସନା କରେ, ମୋ ବିଚାରରେ ସେ କେବଳ ସର୍ବଶ୍ରେଷ୍ଠ ଯୋଗବିତ୍ । ଏହି ଯୋଗବିତ୍ କିପରି ମୋକ୍ଷଲାଭ କରନ୍ତି ତାହା ଗୀତାରେ ଲେଖାଅଛି—

କ୍ଲେଶୋଽଧିକତରସ୍ତେଷା ମବ୍ୟକ୍ତା ସକ୍ତଚେତସାମ୍
ଅବ୍ୟକ୍ତାହି ଗତିର୍ଦୁଃଖ ଦେହବଦ୍ଭିରବାପ୍ୟତେ ।୧୨।୫
ଯେତୁ ସର୍ବାଣି କର୍ମାଣି ମୟି ସଂନ୍ୟସ୍ୟ ମତ୍ପରାଃ
ଅନନ୍ୟେନୈବ ଯୋଗେନ ମାଂ ଧ୍ୟାୟନ୍ତ ଉପାସତେ ।୧୨।୬
ତେଷାମହଂ ସମୁଦ୍ଧର୍ତ୍ତା ମୃତ୍ୟୁ ସଂସାର ସାଗରାତ୍
ଭବାମି ନ ଚିରାତ୍ ପାର୍ଥ ମୟ୍ୟାବେଶିତଚେତସାମ୍ ।୧୨।୭

" ଅବ୍ୟକ୍ତ ବ୍ରହ୍ମଙ୍କ ଉପାସନାରେ ଆସକ୍ତ ପୁରୁଷମାନଙ୍କର ସିଦ୍ଧି ପ୍ରାପ୍ତିରେ ଅଧିକତର କ୍ଳେଶ ହୁଏ । କାରଣ ଦେହଧାରୀ

ଜୀବମାନଙ୍କ ପାଇଁ ଅବ୍ୟକ୍ତ (ବିଷୟ)ରେ ମନର ଲକ୍ଷ ସ୍ଥାପିତ କରିବା ଅତ୍ୟନ୍ତ କ୍ଳେଶ ଜନକ ।୧୨।୫

"କିନ୍ତୁ ଯେଉଁ ଲୋକମାନେ ସବୁ କର୍ମ ମୋତେ ସମର୍ପଣ କରି ମୋତେ ଏକମାତ୍ର ଆଶ୍ରୟ ଜାଣି ଅନ୍ୟ ବୃତ୍ତିକୁ ପରିତ୍ୟାଗ କରି, ଏକାଗ୍ରଚିତ୍ତ ହୋଇ ଧ୍ୟାନ ଅବଲମ୍ବନ ଦ୍ୱାରା ମୋର ଉପାସନା କରନ୍ତି ମୋଠାରେ ନିବିଷ୍ଟଚିତ୍ତ ଏହି ଭକ୍ତମାନଙ୍କୁ ମୁଁ ମୃତ୍ୟୁରୂପ ସଂସାରସାଗରରୁ ଶୀଘ୍ର ଉଦ୍ଧାର କରେ ।" ୧୨।୬-୭ ।

ଲୋକମାନଙ୍କର କଲ୍ୟାଣ ନିମିତ୍ତ ଗୋଲକାଧିପତି ଭଗବାନ ଶ୍ରୀକୃଷ୍ଣ ଯଦୁକୁଳରେ ଜନ୍ମ ଗ୍ରହଣ କଲେ । ଏହି ନିର୍ମଳ ସତ୍ତ୍ୱ-ଗୁଣମୟ ଗୋଲକାଧିପତି ଶ୍ରୀକୃଷ୍ଣ ମୂର୍ତ୍ତିକୁ ନିମ୍ବାର୍କ ସମ୍ପ୍ରଦାୟ ଜଗତକୁ ସତ୍ୟ ଓ ବ୍ରହ୍ମମୟ ମନେକରି ଧ୍ୟାନ କରନ୍ତି । ଶ୍ରୀନିମ୍ବାର୍କସ୍ୱାମୀ "ବେଦାନ୍ତ କାମଧେନୁ"ରେ ଲେଖିଛନ୍ତି:—

ନାନ୍ୟା ଗତିଃ କୃଷ୍ଣପଦାରବିନ୍ଦାତ୍
ସଂଦୃଶ୍ୟତେ ବ୍ରହ୍ମଶିବାଦି ବନ୍ଦିତାତ୍ ।
ଭକ୍ତେଚ୍ଛୟୋପାତ୍ତସୁଚିନ୍ତ୍ୟ ବିଗ୍ରହା—
ଦଚିନ୍ତ୍ୟ ଶକ୍ତେରବିଚିନ୍ତ୍ୟ ଶାସୟାତ୍ ।୧।

"ଭକ୍ତମାନଙ୍କର କଲ୍ୟାଣ ନିମିତ୍ତ ଯେ ସୁଚିନ୍ତ୍ୟ ବିଗ୍ରହ ଧାରଣ କଲେ, ଯାହାଙ୍କର ମହିମା ଅପାର, ଯାହାଙ୍କର ଶକ୍ତିର ସୀମା ନାହିଁ, ସେହି ଅଚିନ୍ତ୍ୟ ଜଗତ୍‌—ଶାସନ-କର୍ତ୍ତା ଶ୍ରୀକୃଷ୍ଣଙ୍କର ବ୍ରହ୍ମଶିବାଦି-ବାନ୍ଦିତ ଚରଣକମଳ ଛଡ଼ା ଜୀବମାନଙ୍କର ଆଉ କୌଣସି ଗତି ଦେଖାଯାଉ ନାହିଁ ।

ଏହି ଶ୍ରୀକୃଷ୍ଣଙ୍କୁ କିପରି ପାଇବ ସେ ସମ୍ବନ୍ଧରେ ଶ୍ରୀ ନିମ୍ବାର୍କସ୍ୱାମୀ ସେହି "ବେଦାନ୍ତ କାମଧେନୁ" ଗ୍ରନ୍ଥରେ ଲେଖିଛନ୍ତି :—

କୃପାସ୍ୟ ଦୈନ୍ୟାଦିଯୁକ୍ତ ପ୍ରଜାୟତେ
ଯଯା ଭବେତ୍ପ୍ରେମ ବିଶେଷ ଲକ୍ଷଣା ।
ଭକ୍ତିର୍ହ୍ୟନନ୍ୟାଧିପତେର୍ମହାତ୍ମନଃ
ସା ଚୋତ୍ତମା ସାଧନରୂପିକାଽପରା ।।

"ଦୈନ୍ୟାଦି ଗୁଣ ଯୁକ୍ତ ପୁରୁଷମାନଙ୍କ ପ୍ରତି ଏହାଙ୍କର (ଭଗବାନ ଶ୍ରୀକୃଷ୍ଣଙ୍କର) କୃପା ଉପଜାତ ହୁଏ, ଏହି କୃପାରେ ସେହି ସର୍ବେଶ୍ୱର ପରମାତ୍ମାଙ୍କଠାରେ ପ୍ରେମ ବିଶେଷ ରୂପ ଭକ୍ତି ଉପଜାତ ହୁଏ । ଏହି ଭକ୍ତି ଦୁଇପ୍ରକାର ଏକ ସାଧନ ରୂପିକା ଅପରା ଭକ୍ତି ଓ ଅନ୍ୟ ଉତ୍ତମା ପରା ଭକ୍ତି ।"

ଏହି ଭକ୍ତିଦ୍ୱାରା ଶ୍ରୀକୃଷ୍ଣ ଉପାସନା ବୈଷ୍ଣବମାନଙ୍କର ଏକମାତ୍ର କର୍ତ୍ତବ୍ୟ । ଶ୍ରୀକୃଷ୍ଣଙ୍କ ସହିତ ତାଙ୍କ ସର୍ବ ପ୍ରଧାନା ଶକ୍ତି ଶ୍ରୀରାଧାଙ୍କ ଆରାଧନା ଏ ସମ୍ପ୍ରଦାୟର ଏକ ବିଶିଷ୍ଟତା । ଶ୍ରୀ ନିମ୍ବାର୍କସ୍ୱାମୀ ଶ୍ରୀକୃଷ୍ଣଙ୍କ ମୂର୍ତ୍ତି ଧ୍ୟାନ କରିବେଳେ ଏପରି ଲେଖି ଅଛନ୍ତି—

ସ୍ୱଭାବତୋଽପାସ୍ତ ସମସ୍ତ ଦୋଷମ୍
ଅଶେଷ କଲ୍ୟାଣ ଗୁଣୈକ ରାଶିମ୍ ।
ବ୍ୟୂହାଙ୍ଗିନଂ ବ୍ରହ୍ମ ପରଂ ବରେଣ୍ୟଂ
ଧ୍ୟାୟେମ କୃଷ୍ଣଂ କମଲେକ୍ଷଣଂ ହରିମ୍ ।
ଅଙ୍ଗେ ତୁ ବାମେ ବୃଷଭାନୁଜାଂ ମୁଦା
ବିରାଜମାନା ମନୁରୂପସୌଭଗାମ୍ ।
ସଖୀ ସହସ୍ରୈଃ ପରିସେବିତାଂ ସଦା
ସ୍ମରେମ ଦେବୀଂ ସକଳେଷ୍ଟ କାମଦାମ୍ ।
ବେଦାନ୍ତ କାମଧେନୁ ।

"ଯେ ସ୍ୱଭାବତଃ ସମସ୍ତ ଦୋଷ ରହିତ, ଯାହାଙ୍କଠାରେ ସର୍ବପ୍ରକାର କଲ୍ୟାଣ-ପ୍ରଦ ଗୁଣ-ସମୂହ ବିଦ୍ୟମାନ, (ମହାବିରାଟାଦି)

ଚତୁର୍ବିଧ ବ୍ୟୂହ ( ଚତୁର୍ବିଧ ବ୍ୟୂହ—୧ ବାସୁଦେବ-ଭାଗବତ ପୁରୁଷୋତ୍ତମ ଈଶ୍ୱରରୂପ । (୨) ସଙ୍କର୍ଷଣ-ସମଗ୍ର ବ୍ରହ୍ମାଣ୍ଡବ୍ୟାପୀ ସୂକ୍ଷ୍ମତମ ପ୍ରକୃତ ଏବଂ ଏହାର ଅଙ୍ଗଭୂତ ସୂକ୍ଷ୍ମ ତଥା ସ୍ଥୂଳ ସମଗ୍ର ଜଗତରୂପ ଦେହଯୁକ୍ତ ପୁରୁଷ । (୩) ପ୍ରଦ୍ୟୁମ୍ନ-ବିଶ୍ୱର ମନରୂପ ସର୍ବବ୍ୟାପୀ ସତ୍ତ୍ୱଗୁଣାଧିଷ୍ଠିତ ପୁରୁଷ, ସ୍ଥୂଳ ତଥା ସୂକ୍ଷ୍ମ ଦେହ-ବିଶିଷ୍ଟ ସମସ୍ତ ଜୀବ ଯାହାଙ୍କ ଅଙ୍ଗଭୂତ । (୪) ଅନିରୁଦ୍ଧ-ଯେ ବିଶ୍ୱବ୍ୟାପୀ ଅହଂ-ତତ୍ତ୍ୱର ଅଧିଷ୍ଠାତା ହୋଇ ନିଜ ଅଙ୍ଗଭୂତ ସ୍ଥୂଳ ଜଗତରେ ପରିଚାଳନା କରନ୍ତି ଏବଂ ସମସ୍ତ ବ୍ୟଷ୍ଟିଭାବାପନ୍ନ ସ୍ଥୂଳ ଦେହଧାରୀ ଜୀବ ଯାହାର ଅଙ୍ଗଭୂତ ) ଯାହାଙ୍କର ଅଙ୍ଗ, ଯାହାଙ୍କର ନେତ୍ର କମଳସଦୃଶ, ଯେ ସମସ୍ତଙ୍କ ବରେଣ୍ୟ ପରମବ୍ରହ୍ମ ସେହି ଶ୍ରୀକୃଷ୍ଣରୂପ ହରିଙ୍କୁ ଧ୍ୟାନ କରୁଅଛି ।"

"ଏହାଙ୍କର ବାମାଙ୍ଗରେ ପ୍ରସନ୍ନବଦନା ବୃଷଭାନୁସୁତା ବିରାଜମାନା, ଯେ ଶ୍ରୀକୃଷ୍ଣଙ୍କ ଅନୁରୂପ ସୌନ୍ଦର୍ଯ୍ୟାଦି ଗୁଣ ବିଶିଷ୍ଟା ଏବଂ ଯାହାଙ୍କର ସେବାରେ ସହସ୍ର ସଖୀ ସଦା ନିଯୁକ୍ତ ରହୁଛନ୍ତି, ଏହି ସର୍ବାଭୀଷ୍ଟ-ପ୍ରଦାୟିନୀ ଦେବୀଙ୍କୁ ମୁଁ ଧ୍ୟାନ କରୁଅଛି ।"

## ପଞ୍ଚମ ଅଧ୍ୟାୟ

## ଗୁରୁ ଓ ଦୀକ୍ଷା

**ସଦ୍‌ଗୁରୁର ଲକ୍ଷଣ ଓ ଦୀକ୍ଷାର ପ୍ରୟୋଜନ:—** ସଦ୍‌ଗୁରୁଙ୍କ ଆଶ୍ରୟ ନ କଲେ ବ୍ରହ୍ମବିଦ୍ୟା ଅର୍ଜନ କରିବା ସମ୍ଭବ ନୁହେଁ । ଯେଉଁମାନେ ସଦ୍‌ଗୁରୁଙ୍କ ସନ୍ଧାନ ଲାଭ କରିଛନ୍ତି ସେମାନଙ୍କ ପକ୍ଷରେ ବ୍ରହ୍ମ ବିଦ୍ୟା ପ୍ରାପ୍ତି ଅତି ସହଜ ।

ଶାସ୍ତ୍ରକାରମାନଙ୍କ ମତରେ ସୃଷ୍ଟିର ଉତ୍ପତ୍ତି ସଙ୍ଗେ ସଙ୍ଗେ ବ୍ରହ୍ମବିତ୍ ଗୁରୁରୂପେ ଅବତୀର୍ଣ୍ଣ ହୋଇ ଥାଆନ୍ତି । ନିଜ ସ୍ୱରୂପ ପ୍ରାପ୍ତିର ଉପାୟ ଶିକ୍ଷା ଦେବା ନିମିତ୍ତ ସ୍ୱୟଂ ବ୍ରହ୍ମ ଗୁରୁରୂପେ ଅବତୀର୍ଣ୍ଣ ହୋଇ ଥାଆନ୍ତି ।

ବ୍ରହ୍ମଙ୍କୁ ଜାଣିବା ପାଇଁ ଯେଉଁ ଶକ୍ତିର ପ୍ରୟୋଜନ ତାହା ଗୁରୁ ଶିଷ୍ୟଙ୍କ ଭିତରେ ସଞ୍ଚାର କରାଇ ଥାଆନ୍ତି । ଏହି ଶକ୍ତି ପରମ୍ପରାରୂପେ ଆଗତ । ଯେଉଁ ବ୍ୟକ୍ତି ପରମ୍ପରାରୂପେ ଆଗତ ଏହି ଶକ୍ତିକୁ ଲାଭ କରି ନାହାନ୍ତି ସେ କେବେ ସଦ୍‌ଗୁରୁ ହୋଇ ପାରିବେ ନାହିଁ । ବିଦ୍ୟା ସମ୍ପ୍ରଦାୟ ବିହୀନ ହେଲେ ଫଳବତୀ ହୁଏ ନାହିଁ । ପରମ୍ପରା ଆଗତ ଶକ୍ତିକୁ ଅଧିକୃତ କରିଥିବା ବ୍ୟକ୍ତିହିଁ ସଦ୍‌ଗୁରୁ । ଏ ସଦ୍‌ଗୁରୁଙ୍କ ଦ୍ୱାରା ଯେ ଦୀକ୍ଷିତ ହୋଇଥିବ ସେ କେବଳ ବ୍ରହ୍ମବିଦ୍ୟା ଶିକ୍ଷା କରି ବ୍ରହ୍ମଙ୍କୁ ପ୍ରାପ୍ତ ହୋଇ ପାରିବ ।

ସଦ୍‌ଗୁରୁ ଆଶ୍ରୟ କଲେ କେବଳ ବ୍ରହ୍ମ ବିଦ୍ୟାର ସ୍ଫୁରଣ ହୁଏ ତାହା ଅନେକ ପଣ୍ଡିତ ଲେଖି ଯାଇଛନ୍ତି । ଶ୍ରୀନିମ୍ବାର୍କ ମହାମୁନୀନ୍ଦ୍ର ତାଙ୍କର "ମନ୍ତ୍ରରହସ୍ୟ ଷୋଡ଼ଶୀ" ଗ୍ରନ୍ଥରେ ଏ ବିଷୟରେ ଲେଖା ଅଛି :—

"ହରି ପ୍ରବର୍ତ୍ତିତ ସନ୍ତତା ମାମେକଂ ଶରଣଂ ଗତଃ
ନିତ୍ୟ ନୈମିତ୍ତିକପରେ ସଦାସ୍ୱାଧ୍ୟନେ ରତଃ ।
ଅମ୍ନାୟ ପରଣୀତେଷ୍ଟୁ ସମୋ ଦୈଶିକ ଉଚ୍ୟତେ ।"
"ଅଗୃଧ୍ନୁ ବେଦତତ୍ତ୍ୱଜ୍ଞୋ ବିଷ୍ଣୁଭକ୍ତୋ ବିମତ୍ସରଃ
ମନ୍ତ୍ରଜ୍ଞୋ ମନ୍ତ୍ରଭକ୍ତଶ୍ଚ ସଦା ମନ୍ତ୍ରାଶ୍ରୟଃ ଶୁଚି ।
ଗୁରୁଭକ୍ତି ସମାଯୁକ୍ତଃ ପୁରାଣଜ୍ଞ ବିଶେଷତଃ ।
ଏବଂ ଲକ୍ଷଣ ସମ୍ପନ୍ନୋ ଗୁରୁରିତ୍ୟଭିଧୀୟତେ ।"

ଇତ୍ୟାଦି ଶାସ୍ତ୍ରୋକ୍ତ ଲକ୍ଷଣ ସମ୍ପନ୍ନଃ କାରୁଣ୍ୟ ବାତ୍ସଲ୍ୟ
କ୍ଷମାଙ୍କର୍ବାଦି-ଗୁଣାଶ୍ରୟ ଏବ ମୁମୁକ୍ଷୁଣା
ଅଶ୍ରୟଣୀୟଃ; ବ୍ୟତିରେକେ ଦୋଷ ଶ୍ରବଣାତ୍
ଭିନ୍ନ ନାବାଶ୍ରିତଃ ସ୍ରବ୍ଧୋ ଯଥା ପାର° ନ ଗଚ୍ଛତିଃ ।
ଜ୍ଞାନ ହୀନା° ଗୁରୁ ପ୍ରା°ପ୍ୟ କୁତୋ ମୋକ୍ଷମବାପ୍ନୁୟାତ୍ ।"
ଇତ୍ୟାଦିଭିଃ ପ୍ରସଙ୍ଗ ପ୍ରାପ୍ତ° ଗୁରୁ ଲକ୍ଷଣ ମୁକ୍ତମ୍ ।

ଶିଷ୍ୟ ଲକ୍ଷଣ:—"ମନ୍ତ୍ର ଷୋଡ଼ଶୀ" ବ୍ୟାଖ୍ୟା ଗ୍ରନ୍ଥରେ ଶ୍ରୀ ଶ୍ରୀନିବାସାଚାର୍ଯ୍ୟ ଶିଷ୍ୟଲକ୍ଷଣ ମଧ୍ୟ ବିସ୍ତୃତରୂପେ ବର୍ଣ୍ଣନା କରିଅଛନ୍ତି । ସେ ଲେଖିଛନ୍ତି—ଶିଷ୍ୟ ଗୃରି ପ୍ରକାର । ୧-ଶିଷ୍ୟମାତ୍ର, ୨-ଅନ୍ତରଙ୍ଗ ଶିଷ୍ୟ, ୩-ଅନ୍ତରଙ୍ଗତର ଶିଷ୍ୟ ୪-ଅନ୍ତରଙ୍ଗତମ ଶିଷ୍ୟ ।

ଅନ୍ତରଙ୍ଗତମ ଶିଷ୍ୟହିଁ ବ୍ରହ୍ମବିଦ୍ୟାର ଅଧିକାରୀ । ଅନ୍ତରଙ୍ଗତମ ଶିଷ୍ୟ ଲକ୍ଷଣ ସମ୍ବନ୍ଧରେ ଶ୍ରୀନିମ୍ବାର୍କାଚାର୍ଯ୍ୟ ଲେଖିଛନ୍ତି:—

ଗୁର୍ବର୍ଥ° ଯସ୍ୟ ପ୍ରାଣାଦି ଯୌବନ° ଧନମେବଚ
ଅସ୍ମୀୟେଷୁ ନିବଦେଲ୍ଲାଽଧିକାରୀ ସମ୍ୟଗୀର୍ଯତେ ।

ଅର୍ଥାତ୍ ଯାହାର ପ୍ରାଣାଦି ଯୌବନ, ଧନ ସବୁ ଗୁରୁ ପାଇଁ, ସେ ନିଜପ୍ରତି ଏବଂ ନିଜ ସମ୍ବନ୍ଧୀୟ ସମସ୍ତଙ୍କ ପ୍ରତି ନିର୍ବେଦ ଯୁକ୍ତ ସେ କେବଳ ସମ୍ୟକ୍ ଅଧିକାରୀ ବୋଲି କଥିତ ହୁଅନ୍ତି ।

ଏହି ଶ୍ଳୋକର ଟୀକା ଲେଖିବାକୁ ଯାଇ ଶିଷ୍ୟ ଲକ୍ଷଣ ସମ୍ବନ୍ଧରେ ଶ୍ରୀ ଶ୍ରୀନିବାସାଚାର୍ଯ୍ୟ ବହୁତ ବିଷୟର ବର୍ଣ୍ଣନା କରି ଅଛନ୍ତି । ସେଥିର ସାରାଂଶ ତଳେ ଦିଆଗଲା ।

ଉତ୍ତମ ଶିଷ୍ୟ ନିମ୍ନଲିଖିତ ଗୁଣଗୁଡ଼ିକ ଥିବା ପ୍ରୟୋଜନ ।

(୧) ଶ୍ରଦ୍ଧା ( ଗୁରୁ ବାକ୍ୟରେ ଅଟଳ ବିଶ୍ବାସ ) ।
(୨) ବିବେକ ( ନିତ୍ୟାନିତ୍ୟରେ ବିଗୃର ସମ୍ପନ୍ନ ଏବଂ ଜାଗତିକ ସବୁ ବସ୍ତୁ ପରମେଶ୍ବରଙ୍କର, ନିଜର ବୋଲି କିଛି ନାହିଁ ) ।

(୩) ଅକାର୍ପଣ୍ୟ ( ସମ୍ପୂର୍ଣ୍ଣ ଅକପଟ ଭାବ ) ।
(୪) ଅକିଞ୍ଚନତ୍ୱ ( ସାଧନାନୁଷ୍ଠାନ-ସାମର୍ଥ୍ୟାଦି ବିଷୟରେ କର୍ତ୍ତୃତ୍ୱାଦି ରୂପାଭିମାନାଦି ଶୂନ୍ୟତ୍ୱଂ ଅର୍ଥାତ୍ ସାଧନାନୁଷ୍ଠାନାଦି ବିଷୟରେ ନିଜର କୌଣସି ସାମର୍ଥ୍ୟାଦି ଥିବାର ଅଭିମାନ ଶୂନ୍ୟତା ) ।
(୫) ଅନନ୍ୟାନ୍ୟ ଗତିତ୍ୱ ( ଏକ ଗୁରୁ ଛଡ଼ା ଅନ୍ୟ ଗତି ନାହିଁ । ଏହିଭଳି ଭାବବିଶିଷ୍ଟ ) ।
(୬) ନିର୍ବେଦ ( ବିଷୟରେ ଅନାସକ୍ତି ) ।
(୭) ଶୌଚାଦି ସମ୍ପନ୍ନତା ଇତ୍ୟାଦି ।

ଦୀକ୍ଷା ଓ ସାଧନ ପ୍ରଣାଳୀ :—କିଭଳି ଭାବରେ ଦୀକ୍ଷା ଦେବାକୁ ହେବ ସେ ସମ୍ବନ୍ଧରେ ସ୍ୱୟଂ ଶ୍ରୀନିମ୍ବାର୍କାଚାର୍ଯ୍ୟ ଏପରି ବର୍ଣ୍ଣନା କରିଛନ୍ତି :—

ଅଦୌ ଗୁରୁନ୍ୟସେତ୍ ପ୍ରାଣାନାତ୍ମନଂ ଧନମେବଚ ।
ସର୍ବସମ୍ବନ୍ଧ ବିଷୟଂ କୃତ୍ୱା ସେବେତ ନିତ୍ୟଶଃ ।
ଦେହେନ୍ଦ୍ରିୟ ମନପ୍ରାଣୈର୍ମୈୟଂ ହିତ୍ୱା ସମାହିତଃ
ଭୃତ୍ୟବତ୍ ପୁତ୍ରବତ୍ ସେବେତ୍ ପ୍ରିୟାବନ୍ଧିତ୍ରବଥା ।
ଯା ଦେୟା ଗୁରୁଣା ବିଦ୍ୟା ଭବସମ୍ବନ୍ଧ ଧ୍ୱଂସିଣୀ
ତାଂ ତଦୁକ୍ତେନ ମାର୍ଗେଣ ଧାରୟେ ଦୈବଷ୍ଟବୋତ୍ତମଃ ।

ଅର୍ଥ—ସର୍ବାଦୌ ଗୁରୁଙ୍କଠାରେ ନିଜର ଅତ୍ମା, ପ୍ରାଣ, ଧନ ଅର୍ପଣ କରିବ । ଗୁରୁଙ୍କ ସବୁପ୍ରକାର ପ୍ରିୟ ସମ୍ବନ୍ଧର ବିଷୟ ବୋଲି ଭାବି ସବୁବେଳେ ସେବା କରିବ । ଦେହ, ଇନ୍ଦ୍ରିୟ, ମନ ଏବଂ ପ୍ରାଣ ଦ୍ୱାରା ସବୁ ମାୟାକୁ ତ୍ୟାଗ କରି ଭୃତ୍ୟ ପରି, ପୁତ୍ର ପରି, ସ୍ତ୍ରୀପରି ମିତ୍ର ପରି ସର୍ବଦା ତାଙ୍କର ସେବା କରିବ । ଭବସମ୍ବନ୍ଧ ବିନାଶ କରିବା ପାଇଁ ଗୁରୁ ଯେଉଁ ବିଦ୍ୟା ଦାନ କରନ୍ତି, ତାହା

ଯେ ଉପଦେଶ ଦେଇଥିବା ମାର୍ଗ ଅନୁସାରେ ବୈଷ୍ଣୋତ୍ତମ ସାଧକ ଧାରଣା କରିବେ ।

ଏ ସମ୍ବନ୍ଧରେ ଶ୍ରୀନିବାସାଚାର୍ଯ୍ୟ "ମନ୍ତ୍ରରହସ୍ୟ ଷୋଡ଼ଶୀ"ର ଟୀକାରେ ବିସ୍ତୃତ ଭାବରେ ଲେଖିଛନ୍ତି । ନିମ୍ବାର୍କ ସମ୍ପ୍ରଦାୟର ଲୋକେ ଶ୍ରୀନିବାସାଚାର୍ଯ୍ୟ ପ୍ରଦର୍ଶିତ ମାର୍ଗକୁ ଗ୍ରହଣ କରିଥିବାରୁ ତାହାର ସାରାଂଶ ନିମ୍ନରେ ଉଦ୍ଧାର କରାଗଲା ।

(୧) "ଗୁରୁପରିଚର୍ଯ୍ୟା କରିବାକୁ ଇଚ୍ଛୁକ ହୋଇ । ମୁମୁକ୍ଷୁ ଲୋକ ଗୁରୁଙ୍କୁ ବିଶେଷରୂପରେ ପରୀକ୍ଷା କରି ଯେତେବେଳେ ଜାଣିବେ ଯେ ସେ ଅତି ଦୟାଳୁ, ସର୍ବପ୍ରାଣୀର ହିତକାରୀ, ନିସ୍ପୃହ, ସର୍ବବିଦ୍ୟା ବିଶାରଦ, ସର୍ବପ୍ରକାର ସିଦ୍ଧ ମନୋରଥ, ସର୍ବସଂଶୟ ଛେତ୍ତା ଏବଂ ଅନଳସ ସ୍ୱଭାବ ଇତ୍ୟାଦି ଏବଂ ଗୁରୁରୂପେ ବରଣ ପାଇବାର ଯୋଗ୍ୟ ଏବଂ ତାଙ୍କ ପ୍ରତି ସମ୍ପୂର୍ଣ୍ଣ ବିଶ୍ୱାସ ଉପଜାତ ହୋଇଛି, ସେତେବେଳେ—

ଯସ୍ୟ ଦେବେ ପରାଭକ୍ତିର୍ଯଥାଦେବେ ତଥା ଗୁରୌ
ତସ୍ୟୈତେ କଥିତା ହ୍ୟର୍ଥାଃ ପ୍ରକାଶନ୍ତେ ମହାତ୍ମନଃ ।

ଇତ୍ୟାଦି ପ୍ରମାଣାନୁସାରେ ଗୁରୁଙ୍କଠାରେ ବ୍ରହ୍ମବୁଦ୍ଧି ସ୍ଥାପନ ପୂର୍ବକ ତାଙ୍କଠାରେ ସମ୍ପୂର୍ଣ୍ଣ ରୂପରେ ଆତ୍ମନିବେଦନ କରିବ । ଏହି ଆତ୍ମନିବେଦନ ସମ୍ବନ୍ଧରେ ବହୁତ ବାକ୍ୟ ଏହିପରି :—
ବିଦ୍ୟା ସ୍ୱତନ୍ତ୍ର ଜଗନ୍ନାଥ ଗୁରବେ, ସଂସାର ବହ୍ନିନା ଦଗ୍ଧଂ ମାଂ କାଳଦଷ୍ଟଂ ତ୍ୱାମହଂ ଶରଣଂ ଗତଃ ।" ଏପରି କରି ଗୁରୁଙ୍କଠାରେ ଉପଦେଶ ପାଇଁ ପ୍ରାର୍ଥନା କରିବ ।

(୨) ସେତେବେଳେ ଦୀକ୍ଷାର୍ଥୀକୁ କିଛି ସମୟ ପାଖରେ ରଖି ନାନାପ୍ରକାର କାର୍ଯ୍ୟରେ ନିଯୁକ୍ତ ରଖି ଓ ତାର ଜାତି, ସ୍ୱଭାବ, ଗୁଣ ଓ ଆନ୍ତରିକ ବୈରାଗ୍ୟ ଇତ୍ୟାଦି ବିଶେଷ—ଭାବରେ ଜ୍ଞାତ ହୋଇ ଯେତେବେଳେ ସେ ଉତ୍ତମାଧିକାରୀ ବୋଲି ବିଶ୍ୱାସ ହେବ ଏବଂ

ଦେଖିବେ ଯେ ସମ୍ପୂର୍ଣ୍ଣଙ୍କ ବ୍ରହ୍ମବିଦ୍ୟା ଏବଂ ବୀଜ ଧାରଣ କରିପାରିବ ସେତେବେଳେ ତାକୁ ପ୍ରଦାନ କରିବେ ।

( ୩ ) ଦୀକ୍ଷା ଦିନରେ ଶିଷ୍ୟ ନିଜ ଶକ୍ତ୍ୟ କିମ୍ବା ପ୍ରକୃତି ସମ୍ପାଦନ କରି ଗୁରୁଙ୍କ ଅଗ୍ରକୁ ଅସି ତାଙ୍କୁ ସାଷ୍ଟାଙ୍ଗ ଦଣ୍ଡବତ କରିବ । ପରେ କରଯୋଡ଼ ପୂର୍ବୋକ୍ତ "ତ୍ରାୟସ୍ୱ ଭୋ ଜଗନ୍ନାଥ" ଇତ୍ୟାଦି ଶ୍ଳୋକ ପାଠ କରି ସାର କହିବ "ହେ ଭଗବାନ, ବିବିଧ ତାପୈଃ ଷଡ଼ବିକାରୈଃ ଗୁଣକର୍ମଭିଃ ଶଦାଦିଭିଣ୍ଡାବିଦ୍ୟାସ୍ମା ସର୍ବୈଃ ସ୍ୱର୍ବତୋ ଗ୍ରସ୍ତୋଽହଂ ଅନନ୍ତାଙ୍ଗଶେଷ୍ୟ- ସର୍ବପ୍ରକାରକ- ପାତକୋ- ପପାତକ ମହାପାତକାଦି ଭିଷ୍ଟ ନିତରାଂ ପୀଡ଼ିତୋଽଅହଂ, ଅସ୍ମାତ ସ୍ୱତନ୍ତ୍ର କର୍ତ୍ତୃତ୍ୱ ଭୋକ୍ତୃତ୍ୱାଭି ସ୍ୱତନ୍ତ୍ର ସର୍ବଜ୍ଞସ୍ୱତ୍ୱ ରୂପତ୍ୱାଭିମାନେନ ଦେହେନ୍ଦ୍ରିୟ ମନ ବୁଦ୍ଧ୍ୟାଦିଷୁ ସ୍ୱଭୋଗ୍ୟତାଭିମାନେନ ତତ୍ତଦ୍ ସମ୍ବନ୍ଧାଭିମାନେନ ଚ, ତଦ ତଦ ସମ୍ବନ୍ଧାଭିନିବେଶଜନ୍ୟ କ୍ଲେଶ କ୍ଳାନ୍ତ ବେପଥୁଃ, ତେଷୁ ନିର୍ବାଚନଃ, ତେଭ୍ୟୋ ମୁମୁକ୍ଷୁର୍ଦାବାଗ୍ନି ପୀଡ଼ିତୋ, ଗଙ୍ଗୋଦକମିବ ତ୍ୱାଂ ଶରଣାଂ ଗତୋଽସ୍ମି, ତ୍ୱତ୍ତୋ ଭୂତ୍ୱା ଇତାର୍ଂ ତ୍ୱାଂ ବୃଣୋମି, ମିଦଂ ଭୂତ୍ୱା ମିଦଂ ତ୍ୱାଂ ବୃଣୋମି, ଅସ୍ମତ୍ୟୋ ଭୂତ୍ୱ ସର୍ବସମ୍ବନ୍ଧାବଚ୍ଛିନ୍ନ ଅସ୍ମୀନଂ ତ୍ୱାଂ ବୃଣୋମି, ସର୍ବସାଧନ ଶୂନ୍ୟଂ ଅକିଞ୍ଚନଂ ସର୍ବପାପ ଯୁକ୍ତଂ ଅଗତିଂ ଗୃପିମାଂ କେବଳ ସ୍ୱାପା- ଧରଣ କାରୁଣ୍ୟ ଦିଗୁଣ ବଶାତ୍ ସର୍ବ ମୁଖ୍ୟବେନ ମସ୍ମାନିବେଦନ- ମାସ୍ମାନଂ ଅସ୍ମୀୟବର୍ଗଞ୍ଚ ଅସ୍ମସାତ୍ କୃତ୍ୱା ସର୍ବସମ୍ବନ୍ଧେନ ମମ ଗୋପ୍ତା ଭୂତ୍ୱା ମାମନୁଗୃହାଣ । ଇତି । ଗୋପ୍ତୃତ୍ୱବରଣବଧିଃ ।

ଏହାର ଭାବାର୍ଥ—ହେ ଭଗବାନ ! ବିବିଧ ତାପାଦି ଏବଂ ବହୁ ଶାଖା ବିଶିଷ୍ଟ ଅବିଦ୍ୟା କର୍ତ୍ତୃକ ପୀଡ଼ିତ ହୋଇ ସର୍ବବିଧ ପାପ କର୍ମ ଦ୍ୱାରା ମୁଁ ଜର୍ଜ୍ଜରିତ ହୋଇଅଛି, ଦେହାଦିରେ ଅସ୍ମୀୟ

ବୁଦ୍ଧି ଏବଂ ନିଜର ସ୍ୱାତନ୍ତ୍ର୍ୟ ଓ କର୍ତ୍ତୃତ୍ୱ ବୁଦ୍ଧି ଦ୍ୱାରା ପ୍ରେରିତ ହୋଇ ଏବଂ ଗୃହପୁତ୍ର କଳତ୍ରାଦିରେ ନିଜର ଭୋଗ୍ୟ ଓ ନିଜର ସତ୍ତ୍ୱ ଏହିଭଳି ଜ୍ଞାନ ସ୍ଥାପନ କରି, କ୍ଲେଶେ କର୍ଷିତ କଳେବର ହୋଇଅଛି, ଏହିକ୍ଷଣି ସେ ସବୁ ପ୍ରତି ମୋର ନିର୍ବେଦ ଉପସ୍ଥିତ ହୋଇଅଛି । ଅତଏବ ଦାବାଗ୍ନି ଦ୍ୱାରା ପୀଡ଼ିତ ବ୍ୟକ୍ତି ଯେପରି ଗଙ୍ଗୋଦକ ପ୍ରାପ୍ତ ହୋଇ ଆଶ୍ୱସ୍ତ ହୁଏ, ସେହିପରି ଆଶ୍ୱସ୍ତ ଚିତ୍ତରେ ମୁଁ ଆପଣଙ୍କର ଶରଣ ନେଲି । ମୁଁ ଭୃତ୍ୟ ହୋଇ ଆପଣଙ୍କୁ ଭର୍ତ୍ତୃତ୍ୱରେ, ମିତ୍ର ହୋଇ ମିତ୍ରତ୍ୱରେ ଏବଂ ସର୍ବବିଧସମ୍ବନ୍ଧ ବିଶିଷ୍ଟ ରୂପରେ ନିଜ ଆତ୍ମାକୁ ଆପଣଙ୍କୁ ବରଣ କରୁଅଛି । ମୁଁ ସର୍ବବିଧ ସାଧନ ଶୂନ୍ୟ, କୌଣସି ବିଷୟରେ ମୋର କିଛି ସାମର୍ଥ୍ୟ ନାହିଁ ପାପରେ ମଜ୍ଜନ ଓ ଅଗତି । ଆପଣ କେବଳ ନିଜର ଅସାଧାରଣ କରୁଣାବଳରେ ମୋତେ ସର୍ବତୋଭାବରେ ଆପଣଙ୍କର ନିଜର କରି ଗ୍ରହଣ କରି ମୋତେ ରକ୍ଷା କରନ୍ତୁ । ଏହାହିଁ ଗୁରୁଙ୍କୁ "ରକ୍ଷକତ୍ୱ"ରେ ବରଣ ପ୍ରଣାଳୀ ।

ଏହାପରେ ଗୁରୁ ଶିଷ୍ୟକୁ ନିକଟରେ ବସାଇ ତାର ହାତ ଧରି ତାକୁ ପଚାରିବେ, "ଯଦି ତୁମେ ସଂସାରକୁ ଭୟ କରିଥାଅ ତେବେ ସମ୍ପୂର୍ଣ୍ଣ ରୂପରେ ମୋର ଦାସ ହେବ ତ ?" ତାର ଉତ୍ତରରେ ଶିଷ୍ୟ ତିନିଥର କହିବେ, "ହଁ, ହେବି ।" ତାପରେ ଗୁରୁ କହିବେ, "ଯଦି ସମ୍ପୂର୍ଣ୍ଣରୂପରେ ଅନୁଗତ ଭୃତ୍ୟ ହୁଅ, ତାହାହେଲେ ତୁମକୁ ମୁଁ ଆତ୍ମସାତ୍ ( ନିଜର ) କରିବି ।" ଏହିପରି ପୁତ୍ର, ମିତ୍ର ଇତ୍ୟାଦି ସର୍ବବିଧ ସମ୍ବନ୍ଧର ବିଷୟ ପୃଥକ୍ ପୃଥକ୍ କରି କହି ଗୁରୁ ଶିଷ୍ୟକୁ ପଚାରିବେ, "ତୁମେ ଏଭଳି ହେବ ତ ?" ଶିଷ୍ୟ ପ୍ରତ୍ୟେକ ପ୍ରଶ୍ନର ଉତ୍ତରରେ ତିନିବାର "ହଁ ହେବି" ବୋଲି କହିବେ । ଗୁରୁ ମଧ୍ୟ "ଆତ୍ମସାତ୍ କରିବି" ଏହା

କହିବେ । ସର୍ବଶେଷରେ କହିବେ, "ତ୍ରିଷୁ ଲୋକେଷୁ ସଂସାରାତ୍ ବର୍ଣ୍ଣ ତୁମର ରକ୍ଷକ ହେବ, ତୁମେ ଭୟ [illegible] ଅମ୍ବସାତ୍ତ୍ବକରଣ ପ୍ରଣାଳୀ ।

(୮) ତା ପରେ ଗୁରୁ ସ୍ୱହସ୍ତରେ ତୁଳସୀକାଠର ମାଲ୍ୟ ଶିଷ୍ୟର କଣ୍ଠରେ ଧାରଣ କରାଇବେ । ବହୁତ ମନୋଜ୍ଞବଣ କରି ଗୋପୀଚନ୍ଦନ ଦ୍ୱାରା ଲଲାଟରେ ଅର୍ଦ୍ଧ୍ୱପୁଣ୍ଡ୍ର ଏବଂ ଅନ୍ୟାନ୍ୟ ସ୍ଥାନରେ ଦ୍ୱାଦଶ ତିଳକ ରଚନା କରିବେ । ବାହୁରେ ଶଙ୍ଖଚକ୍ର ଅଙ୍କ କରିବେ । ତା ପରେ ମନ୍ତ୍ର ଉଚ୍ଚାରଣ କରି "ଭଗବାନଙ୍କର ନିଜ" ଏ ଅର୍ଥ ପ୍ରକାଶକ ନାମ ଦ୍ୱାରା ଶିଷ୍ୟର ନାମକରଣ କରିବେ । ତା ପରେ ଗୁରୁ ଶିଷ୍ୟଙ୍କୁ ନିଜ କୋଡ଼ରେ ବସାଇ ତାହାର ଦକ୍ଷିଣ ହାତ ନିଜ କଣ୍ଠରେ ସ୍ଥାପନ କରିବେ ଏବଂ ଗୁରୁ ପରମ୍ପରା ( ଅର୍ଥାତ୍ ପ୍ରଥମଠାରୁ ଆରମ୍ଭ କରି ତା ପର ତାପର ପୂର୍ବାଚାର୍ଯ୍ୟମାନଙ୍କର ନାମ ) ଉପଦେଶ ଦେବେ । ସେହିଠାରୁ ଶିଷ୍ୟ ଅଚ୍ୟୁତକୁଳର ବୋଲି ଗଣ୍ୟ ହେବ ।

(୯) ଅତଃପର ଶିଷ୍ୟର ସ୍ୱରକ୍ଷ୍ୟାଭିଷେକ କରିବେ । ତାର ମନ୍ତ୍ର ଓ ପ୍ରଣାଳୀ ଏହିପରି:—"ସ ସ୍ୱରାଟ୍ ଭବତି" ଏହି ମନ୍ତ୍ର ଦ୍ୱାରା ତାହାର ସ୍ୱରାଜ୍ୟବିଧାନ କରିବେ । ପୁଣି କହିବେ "ଗୁରୋରଙ୍କମେବ ତବ ସିଂହାସନମ୍" ( ଗୁରୁଙ୍କର ଅଙ୍କ କେବଳ ତୁମର ସିଂହାସନ ) "ଗୁରୋ ଦକ୍ଷିଣହସ୍ତ ଏବ ତବ ଛତ୍ରଂ" ( ଗୁରୁଙ୍କର ଦକ୍ଷିଣହସ୍ତ କେବଳ ତୁମର ଛତ୍ର ), "ତଦ୍ୱାମହସ୍ତ ଏବ ଚାମରମ୍" ( ତାଙ୍କର ବାମ ହସ୍ତ ତୁମର ଚାମର ) "ତତ୍ତ୍ୱା ତାପସପରିକର ଏବ୍ଦୋୟିବ ତବ ସେନା" ( ତପସ୍ୟାର ସହକାରୀ ବିଦ୍ୟାଦି ତୁମର ସେନା ), "ଶ୍ରୀଭଗବତ୍ସ ସମ୍ବନ୍ଧ ଏବ ତବ ରାଜଧାନୀ" ( ଭଗବାନଙ୍କ ସହିତ

ଯେଉଁ ତାଦାତ୍ମ୍ୟ ସମ୍ବନ୍ଧ ତାହାହିଁ ତୁମର ସ୍ୱରୂପଜ୍ଞାନ ,"ଶ୍ରୀ ଭଗବତ୍ ଭାବାପତ୍ତିରେବ ଭବ୍ୟତ୍ସ୍ୱ" ( ଭଗବାନ୍ ଭାବକୁ ଲାଭ କରିବା ହିଁ ତୁମର କାମ୍ୟ ), "ତାମାଦନାବୃତ ପୂର୍ବକ ପ୍ରକୃତି ସମ୍ବନ୍ଧ ଧ୍ୱଂସ ଏବ ତବ ଭଗବତ୍ପ୍ରାପ୍ତିଃ" ( ତାମସାଦି ନିବୃତ୍ତି ପୂର୍ବକ ମାୟା ସମ୍ବନ୍ଧର ଧ୍ୱଂସହିଁ ତୁମର ଭଗବତପ୍ରାପ୍ତି ) । ଏହି ଭଳି ଆଶୀର୍ବାଦ କରି ଗୁରୁ କହିବେ—

ଶିଷ୍ୟପୁତ୍ର ମହାଭାଗ ସମ ହିତ ମନାଭବ
ଅଭତେ ବଭ୍ରେଣ୍ୟ କରବମ୍ ବ୍ରହ୍ମସ୍ୱରୂପ୍ୟ ସିଦ୍ଧୟେ ।
ସଂସାରଭବ୍ୟମୁକ୍ତସ୍ତସ୍ୟ ମାମାକାଂକ୍ଷେହଣଂ କୁରୁ
ଅସ୍ଥାନଂ ତନ ନିଷ୍ପ୍ୟ ନିର୍ଦ୍ଦେଶେରବ ସ୍ୱବ୍ରତ ।
ବ୍ରହ୍ମ ବଦ୍ୟାଂ ପ୍ରଦଶ୍ୟାମି ଯଜ୍ଜ୍ଞାତ୍ୱାମୃତମ ସ୍ମୃତେ
ଯସ୍ୟା ସର୍ବାଣି ଭୂତାନି ପଶ୍ୟସ୍ୟାତ୍ମନ୍ୟଥୋ ହରୌ ।
ଯଂ ଲବ୍ଧା ଗୃପରଂ ଲଭଂ ମନ୍ୟତେ ନାଧିକଂ ତତଃ
ଯସ୍ମିନ୍ ସ୍ଥିତୋ ନ ଦୁଃଖେନ ଗୁରୁଣାପି ବିଚାଲ୍ୟତେ ।
ତଂ ବିଦ୍ୟାଦ୍ ଦୁଃଖସଂଯୋଗ ବିୟୋଗଂ ଯୋଗମାତ୍ମନଃ
ଲଭ୍ୟତେ ପରମଂ ଧାମ ଯତୋ ନାବର୍ତ୍ତିତେ ବୁଧଃ ।

ତା ପରେ ଶାନ୍ତିପାଠ କରି ଶିଷ୍ୟର ଦକ୍ଷିଣ କର୍ଣ୍ଣରେ ମନ୍ତ୍ରରାଜ ଉଚ୍ଚାରଣ କରିବେ । ତାପରେ "ମନ୍ତ୍ର ଷୋଡ଼ଶୀ"କୁ ବ୍ୟାଖ୍ୟା କରି ଶିଷ୍ୟକୁ ବୁଝାଇବେ । ଅତଃପର ଶିଷ୍ୟ ଗୁରୁଙ୍କର କୋଳରୁ ଉଠି ଭୂମିରେ ଶୋଇ ଦଣ୍ଡବତ କରିବେ । ଗୁରୁ ଶିଷ୍ୟର ଦକ୍ଷିଣ ହସ୍ତରେ ପାଣି ରଖି ନିଜ ହସ୍ତରେ ଭଗବତ୍‌ବିଗ୍ରହ ଶାଳଗ୍ରାମ ରଖି ଅସ୍ମାସ୍ୱୀସ୍ୱାର୍ପଣରୂପ ସଂକଳ୍ପ ନିଜେ ପାଠ କରି ସେହି ସମୟରେ ଶିଷ୍ୟଦ୍ୱାରା ଏହି ସଂକଳ୍ପ ପାଠ କରାଇ, ଶିଷ୍ୟର ଦକ୍ଷିଣହସ୍ତ ଧାରଣ କରି "ଶ୍ରୀକୃଷ୍ଣ ରୁକ୍ମିଣୀକାନ୍ତ ଗୋପୀଜନ ମନୋହର,

ଧ୍ୟାନୁଗ୍ରହଣେ ଭଗବାନ୍ ଅମୃସାତ୍ ବରୁ କେଶବ । ଙ୍ଗଧାର ଜାତ ମଦ୍ଧୋଽହଂ ଅଗତଃ ଶରଣଂ ତବ । ସ୍ୱବାତ୍ସଲ୍ୟ ଗୁଣେନୈବ ଦୟାସ୍ୱ ମାତ୍ତ କୁରୁ ମାଧବ ।" ଏହି ମନ୍ତ୍ର ପାଠ ପୂର୍ବକ ଶିଷ୍ୟର ସେହି ହାତରେ ସେହି ଶାଳଗ୍ରାମ ଦେଇ ଶିଷ୍ୟଙ୍କୁ ଭଗବାନଙ୍କ ଦ୍ୱାରା ଅମୃସାତ୍ କରାଇବେ । ଅତଃପର ଗୁରୁ ନିଜର ପାଦୋଦକ ଓ ପ୍ରସାଦ ଶିଷ୍ୟଙ୍କୁ ଦେଇ ତାଙ୍କୁ ଅଲିଙ୍ଗନ କରି କହିବେ— "ମୟାତ୍ୱଂ ସର୍ବଭାବେନ ଅମୃସାତ୍ କୃତଃ, ସର୍ବସମ୍ବନ୍ଧାନୁସାରେଣ ତତ୍ତଦବସ୍ଥୋଚିତା ପରିଚର୍ଯ୍ୟା ଭୃତ୍ୟପୁତ୍ରାଦିବତ୍ କର୍ତ୍ତବ୍ୟା ।" ( ମୁଁ ତୁମକୁ ସର୍ବତୋଭାବରେ ଅମୃସାତ୍ କଲି । ଭୃତ୍ୟପୁତ୍ରାଦି ପରି ସର୍ବବିଧ ସମ୍ବନ୍ଧାନୁସାରେ ଅବସ୍ଥାନୁଯାୟୀ ପରିଚର୍ଯ୍ୟା କର ।) ଶିଷ୍ୟ ମଧ୍ୟ ତିନିବାର ପ୍ରତିଜ୍ଞା କରିବ । ସେ କହିବେ, "ଭଗବାନ୍ ! ମୁଁ ଏହିପରିହିଁ କରିବି ।" ତା ପରେ ଶିଷ୍ୟପ୍ରତି ସବୁ ପ୍ରକାର ପ୍ରୀତିଯୁକ୍ତ ହୋଇ ଗୁରୁ ତାହାର ବୁଦ୍ଧିର ଧାରଣାଶକ୍ତି ପ୍ରତି ଲକ୍ଷ୍ୟ କରି ଦେଶ ଓ କାଳୋପଯୋଗୀ ସେବାଦିର ଉପଦେଶ ଦେବେ ।

(୬) ଅତଃପର ଗୁରୁ ଭକ୍ତ ଶ୍ରୀ ଭଗବାନ୍ ବିଗ୍ରହ ଶାଳଗ୍ରାମଙ୍କୁ ଯଥାବିଧି ଉପଚାର ଦ୍ୱାରା ପୂଜା କରି ଶିଷ୍ୟର ମୁଣ୍ଡ ଉପରେ ଥୋଇ କହିବେ, "ମୁଁ ତୁମର ହେଲି ।" ତା ପରେ କହିବେ, "ଯେଉଁ ଭଗବାନ୍‌ଙ୍କଠାରେ ତୁମେ ନିଜ ଅତ୍ମାକୁ ଏବଂ ମନପ୍ରାଣ ଦେଇ ଇନ୍ଦ୍ରିୟ-ଅଦି ଅତ୍ମୀୟ ବସ୍ତୁକୁ ଅର୍ପଣ କରିଅଛ ( ଯେଉଁ ଭଗବାନଙ୍କ-ଠାରେ ପୁଣି ମୋର ଦେହ ମନ ପ୍ରାଣ ଇନ୍ଦ୍ରିୟ ଅତ୍ମା ପ୍ରଭୃତି ମଧ୍ୟ ଅର୍ପିତ ହୋଇଛି ) ସେହି ଭଗବାନଙ୍କର ସେବା କାର୍ଯ୍ୟରେ ତୁମେ ସବୁବେଳେ ରତ ରହ । ସର୍ବସମ୍ବନ୍ଧାନୁସାରେ ଅବସ୍ଥାନୁସାରେ ତାଙ୍କର ସେବା କର ।" ଏହି ଭଳି ଉପଦେଶ ଦେଇ

ଭଗବାନଙ୍କଠାରେ ପୂର୍ବପର "ଶ୍ରୀକୃଷ୍ଣ ରୁକ୍ମିଣୀକାନ୍ତ" ଇତ୍ୟାଦ ମନ୍ତ୍ର ଉଚ୍ଚାରଣ କର ଶିଷ୍ୟ ପାଇଁ ପ୍ରାର୍ଥନା କରବେ । ଶିଷ୍ୟ ମୁଖରେ ପୁନର୍ବାର ସେ ସବୁ ଆବୃତ୍ତି କରାଇ ଏହ ଭଗବତ୍ ବିଗ୍ରହ ଶିଷ୍ୟଙ୍କୁ ଅର୍ପଣ କରବେ । [ ଗୁରୁ ଶିଷ୍ୟ ସମ୍ବାଦ । (ବ) ପୃ ୧୯୨—୨୦୦ ]

ଏ ସମ୍ପ୍ରଦାୟର ମନ୍ତ୍ର ଦଶାକ୍ଷରୀ ଓ ଅଷ୍ଟାଦଶାକ୍ଷରୀ ଗୋପାଳ ମନ୍ତ୍ର ।



ମୁଦ୍ରାକର—ଶ୍ରୀ ପରମେଶ୍ୱର ଦାଶ ଚୌଧୁରୀ, ରଣି ପ୍ରେସ
କଟକ ୧ — ୧୯୫୨

